

# ଜଗମୋହନ ।



## ପ୍ରଥମ ଛାନ୍ଦ—ଗର୍ଭ ଗୁମ୍ଫା ।

ଅନାଦକନ୍ଦ୧ ଚରଣେ ହୋଇ ବନ୍ଦନ । ଏବେ ଶୁଣ ଜଗ-
ମୋହନ ଗୀତ । ୧ । ଅଶେଷ କୋଟି ବ୍ରହ୍ମାଣ୍ଡ ମଧ୍ୟେ ଉତ୍ତମ ।
ଶ୍ରୀ କ୍ଷେତ୍ର ଅଛି ନାମ ପୁରୁଷୋତ୍ତମ । ୨ । ଭରତଖଣ୍ଡ ଦେଶରେ ପ୍ରସି-
ଦ୍ଧ ଉତ୍କଳଦେଶେ । ପଞ୍ଚକୋଶ ଶଙ୍ଖ ଆକୃତିରେ ପ୍ରକାଶେ । ୩ । ବୈ-
କୁଣ୍ଠ ବୋଲନ୍ତି ଯେ କ୍ଷେତ୍ର ମହିମା । ଜନମ ମରଣ ନାହିଁ ମୁକତି
ସୀମା୨ । ୪ । ଅଗତି ଲୋକଙ୍କର ଶ୍ରେଷ୍ଠ ପରମଗତି । ଅନେକ ଦେବଙ୍କ
ଆଜ୍ଞା ତଳ୍ପରେ ସ୍ଥିତି । ୫ । ବଳଦ୍ଧ କାଳେ ବସ୍ତୁ ଙ୍କୁ ସ୍ତୁତି ପ୍ରକାଶେ ।

---

୧ଅନାଦର ମୂଳସ୍ୱରୂପ ଚିତ୍ତ । ୨ଯେଉଁ ମନ୍ତ୍ରକ ବଳ ଅଛି ମୁକ୍ତି
ନାହିଁ । ୩ଅଶରୀରୀ କଥା ।

Digitized by srujan ka@gmail.com

ତାଙ୍କୁ ଅଗୋଚର । ୧୮ । ସହସ୍ର ପଣରୁ ଶଷ୍ପଯାତ ସହନ୍ତି । ସବରତେ ହୋଇଥାନ୍ତି ମଉନବ୍ରତୀ ।୧୯। କହିଲେ ନାହିଁ ଶବ୍ଦ ତାଙ୍କ ଗଉତ । ବଗୁରେଲେ ବୃକ୍ଷେ ଅଛୁ ବୈଷ୍ଣବସ୍ଥ ।୨୦। ଏହୁ ଯୋଜନ କ୍ଷେତ୍ରବରେ ଅଛନ୍ତି ରହି । ନେତ୍ରପଥେ ଦେଖି ନରେ ହୁଅନ୍ତି ମୋହି ।୨୧। ଆନ ବୃକ୍ଷମାନଙ୍କର ଏ ଗୁଣ ନାହିଁ । ମାରକ୧ କଣ୍ଟକ ଆଦି ବର୍ଜିଣ୨ ବହି ।୨୨। ଏଣୁ ତାହାଙ୍କର ନାହିଁ କ୍ଷେତ୍ରରେ ବାସ । ସାଧୁଙ୍କୁ ଦୁର୍ଜନ ସଙ୍ଗ ହୁଅଇ କେ ।୨୩। ଅମୃତଆଧାର୩ ସେ ନଗ୍ରରେ ବହୁତ । ଅମୃତସମ ଶୀତଳ ତହିଁ ମରୁତ୪ ।୨୪। ଅମୃତ କୁସୁମମାନେ୫ ଫୁଟନ୍ତି ତହିଁ । ସିତ୬ ଅସିତ୭ ଲୋହିତ ବର୍ଣ୍ଣକୁ ବହି ।୨୫। ଅନେକ ଅମୃତରେ ପତଙ୍ଗମାନେ୮ । ଆନନ୍ଦେ ବନ୍ଦନ୍ତି ସେ ଅମୃତ ସ୍ଥାନେ୯ ।୨୬। ଅବଗାହ୧୦ ମାତ୍ରକେ କରନ୍ତି ବହୁ । ବିମଳ କ୍ଷେତ୍ର୧୧ ପ୍ରସାଦ ଏକା ଉଚିତ ।୨୭। ଯେଉଁ ବିଷ୍ଣୁଲ ପତ୍ରି କାକ ଅଞ୍ଜଳ[illegible] ଶ୍ରେଷ୍ଠ ପ୍ରାପ୍ତ ହୋଇଲା ସେ ଚତୁରଭୁଜ ।୨୮। ବିସ୍ତାରୁ କର କହିବ କେତେ ତାହା । ବେଦ ବେଦାନ୍ତ ଗୋଚର ନୋହିଲ ଯାହା ।୨୯। ପନ୍ତପନ୍ତ ହୋଇ ପୁଷ୍ପ୧୩ ନେକ ତହିଁ । ଜଡ଼ଜଡ଼ି ହୋଇଛନ୍ତି ବଲଗ ନାହିଁ ।୩୦। ଥା୧୪ ଲେପମାନଙ୍କରେ ସୁନ୍ଦର ଭଣ୍ଡି୧୫ । ସହସ୍ରେ ନନ୍ଦନ୍ତି ପୂର୍ଣ୍ଣଚନ୍ଦ୍ରମା କେଉଁଭି ।୩୧। ବିରଚୁ ଚତୁରେ ବନ୍ଦି ଶୋଭି କେ ଯାଏ । ନିର୍ମଳ ହୃଦରେ ଅନୁରାଗ ପରସ୍ପେ୧୬ ।୩୨। ବାତାୟନମାନ୧୭ ତହିଁ

---

୧ନାଶକାରୀ । ୨ଦୂର୍ଗୁଣ । ୩ଜଳାଧାର, ପୁଷ୍କରିଣୀ ପ୍ରଭୃତି । ୪ପବନ । ୫ଜଳପୁଷ୍ପମାନେ । ୬ଶୁକ୍ଳ । ୭କୃଷ୍ଣ । ୮ଜଳଚର ପକ୍ଷିମାନେ । ୯ସେଠାରେ ଜଳ ଥିବା ସ୍ଥାନମାନଙ୍କରେ । ୧୦ସ୍ନାନ । ୧୧ପବିତ୍ର ତୀର୍ଥସ୍ଥାନ । ୧୨ପକ୍ଷୀ । ୧୩ଗୁଚ୍ଛ । ୧୪ଭୂବ । ୧୫କାନ୍ତ । ୧୬ଶୁକ୍ଳକାନ୍ତ ନିର୍ମଳ ହୃଦୟ ପଦ୍ମ, ତହିଁରେ ଲେଖା ହୋଇଥିବା ନାଲି ବର୍ଣ୍ଣର ଚିତା ଛବି ପ୍ରେମ ପଦ୍ମ । ୧୭ଜଳାଷ୍ଟ୍ରବାଟୀ ।।

Digitized by srujan ka@gmail.com

ଦିଶନ୍ତି ଶୋଭା । ଅବଲୋକନ[୧] ମାତ୍ରକରେ ଜର୍ପିନ ଲୋଭ । ୩୩ ।
ନାଗରୀଙ୍କ[୨] ଗୃହଦ୍ୱାରେ ଏମନ୍ତ ଦିଶେ । କାମକାଣ୍ଡଦାଣ୍ଡ ଦୁର୍ଗ[୩]
ପ୍ରାୟେ କ ସେ । ୩୪ । ରାଜମାର୍ଗମାନ[୪] ମହା ସୁଶୋଭ ପାଏ ।
ଅବନୀ-କାମିନୀଶିର ସିମନ୍ତୀ ପରାଏ[୫] । ୩୫ । ଗତାଗତ ଲୋକରେ
ଅତ୍ୟନ୍ତ ଗହଳ । ହରଷ[୬] ଚରିତ ଗୀତରେ ଅଛି ଚହଳ । ୩୬ ।
ଅନେକ ବର୍ଣ୍ଣର[୭] ଲୋକେ ଅଛନ୍ତି ତହିଁ । ଯେ ଯାହାର କର୍ମ ଧର୍ମ-
ମାନଙ୍କୁ ବହି । ୩୭ । ଏମନ୍ତ କ୍ଷେତ୍ରରେ ଯେବେ ମହାସମ୍ପତ୍ତି ।
ବଜସ୍ତ ଶ୍ରୀଜଗନ୍ନାଥଦେବ ନୃପତି । ୩୮ । ଅପାରୁଁ ଅପାର ତାହାଙ୍କର
ମହିମା । ଅଜହିଁ ଜାଣି ନାହାନ୍ତି ଶଙ୍କର ବ୍ରହ୍ମା । ୩୯ । ଅଶେଷ
ବ୍ରହ୍ମାଣ୍ଡ ଏକା ପ୍ରଭୁହିଁ ସେହି । ତାଙ୍କ ସମ ହୋଇ ଅଉ ନାହାନ୍ତି
କେହି । ୪୦ । ଇନ୍ଦ୍ର ଚନ୍ଦ୍ର ଆଦି ଯେତେ ଅମରଗଣ[୮] । ଅନ୍ତରେ
ଯାହାଙ୍କ ଚରଣେ ଶରଣ । ୪୧ । ସ୍ତୁତି ଆଦି ଅନ୍ତର ସେ ଅଧିକାରଣ ।
ସ୍ଥାବର[୯] ଜଙ୍ଗମ[୧୦] କୀଟ ପତଙ୍ଗେ ଅଛନ୍ତି ।। ହେଲେହେଁ ଇତର[୧୧]
ଚତୁର୍ବର୍ଗ[୧୨] ଦିଅନ୍ତି । ତାହାଙ୍କ ପରା ବ୍ରହ୍ମାଣ୍ଡେ ଦାତା ନାହାନ୍ତି ।
ତାହାଙ୍କ ହୃଦରେ ଯେଉଁ କରୁଣା ଅଛି । ବର୍ଣ୍ଣନ କରିବାକୁ ତ ନ
ଦିଶେ କିଛି । ୪୪ । ସମୁଦ୍ର ସ୍ତୁ ବୋଲିବା ସେ ସଂଖ୍ୟାରେ ଅଛି ।
ମେରୁ ପର୍ବତରୁହ୍ନର ସେ ନୁହଇ ଲଛି । ୪୫ । ଅନନ୍ତ[୧୩] ନାମରୁ
ଅଛି ଅକାଶ ଦିଶେ । ମେଘ ଅବା ଜଳଧାରା କେତେ ବରଷେ । ୪୬ ।
ଅଶେଷ କରୁଣା କର ନୁହଇ ଶେଷ । ଲେଶେ କେହି ନ ପାରନ୍ତି
ଶେଷ[୧୪] ମହେଶ । ୪୭ । କୋଟି କୋଟି ସୂର୍ଯ୍ୟ ସମ ନୁହେ ତେଜରୁ ।

---

୧ ଦର୍ଶନ । ୨ ସ୍ତ୍ରୀମାନଙ୍କ । ୩ କନ୍ଦର୍ପର ବାଣ ରଖିବାର ବାହାର ଦୁର୍ଗ । ୪ ପ୍ରଶସ୍ତ ଦାଣ୍ଡମାନ । ୫ ପୃଥିବୀ-ସ୍ତ୍ରୀ ମସ୍ତକର ସିନ୍ଦୂରା କି ? ୬ ହର୍ଷ , ଜଗନ୍ନାଥ । ୭ ଜାତିର । ୮ ଦେବତାମାନେ । ୯ ବୃକ୍ଷ ପର୍ବତ ପ୍ରଭୃତି ଅଚଳ ପଦାର୍ଥ । ୧୦ ଗମନାଗମନ କରିବା ପ୍ରାଣୀ । ୧୧ ସାମାନ୍ୟ ଲୋକ ହେଲେହେଁ ତାଙ୍କୁ । ୧୨ ଧର୍ମ ଅର୍ଥ କାମ ମୋକ୍ଷ । ୧୩ ଅକାଶେ, ଗୋଟିଏ ନାମ ଅନନ୍ତ — ଅସୀମ । ୧୪ ବାସୁକି ।

Digitized by srujan ka@gmail.com

ଅହ୍ଲାଦେ ଜିଣନ୍ତି କୈବଦ୍ୱିଗସ୍ତଙ୍କୁ୧ । ୪୮ । ମାଧୁରିରେ ନଟନାଗ-
ରମାନଙ୍କ ଗୁରୁ । ମହାଅରଣ୍ୟେ ଡାକିଲେ ଶୁଣନ୍ତି ଦୂରୁ । ୪୯ ।
ନୃପକଂସ ବଂଶ୨ ସେ କରନ୍ତି ଧ୍ୱଂସ । ଅନର୍ପିତ ଅକ୍ଷରକୁ ଯେସନ
ହଂସ୩ । ୫୦ । ଦୁଃଖିଲୋକମାନଙ୍କର ଦୁଃଖ ହରନ୍ତି । ପ୍ରାତଃ-
କାଳ ଲୋକେ ତାଙ୍କ ନାମ ଧରନ୍ତି । ୫୧ । ସମସ୍ତ ଜୀବଙ୍କୁ ସଦା-
ବର ଦିଅନ୍ତି । ଅଗ୍ରବକୁ ଦୂର ଘରେ ବଶ କୁଅନ୍ତି । ୫୨ । ଶତ୍ରୁ ହୋଇ
ଶରଣକୁ ଯେବେ ଆସଇ । ଅଭୟପଞ୍ଜରେ୪ ପଶି ଭୟ ନାଶଇ । ୫୩
ରସିକ ହବେକ ମହାଧୈର୍ଯ୍ୟବନ୍ତ । ସବୁରୂପ ତାହାଙ୍କ ଚରିତ
ଚରିତ୫ । ୫୪ । ଅଂଶୁମନ୍ତ୬ ପଣ ତାହାଙ୍କର ଏମନ୍ତ । ରେଣୁକୁ
କରନ୍ତି ମେରୁପର୍ବତ ମତ । ୫୫ । କୃପାକଟାକ୍ଷରେ ଯେ ଯାହାଙ୍କୁ
ଚାହାଁନ୍ତି । କୋଟି ଇନ୍ଦ୍ରପଦବ ତାହାଙ୍କୁ ଦିଅନ୍ତି । ୫୬ । ଶେଷ କର
ନୁହଇ ତାହାଙ୍କ ମହିମା । ବ୍ରହ୍ମାଙ୍କୁହିଁ ଅଗୋଚର ଯାହା ଗରିମା୭ ॥
ଭକ୍ତଜନ ବତ୍ସଳ ସେ [illegible] ଯାହା୮ । ପତିତପାବନ ନାମ ଅଛନ୍ତି
[illegible] ୫୮ । ଅଘଟ ଘଟଣ କରନ୍ତି କ୍ଷମା । ଅଟନ୍ତି ବଡ଼ ପ୍ରଭୁ
ସେ ବଚନ୍ତକର୍ମା । ୫୯ । ଜଗନ୍ନାଥ ଦେବ ନରପତି ପରାୟେ । ଚଉଦ-
ଲୋକରେ ସମ ନାହାନ୍ତି ଯାହେ । ୬୦ । ସବୁଠାରୁ ସୁଖଭୋଗ ଜାଣନ୍ତି
ସେହୁ । ଶ୍ରୀମନ୍ତ୯ ପ୍ରଭୁମାନଙ୍କ ଲକ୍ଷଣ ଏହୁ । ୬୧ । କେ କହିବ
ତାହାଙ୍କ ଶ୍ରୀମନ୍ତ ଲକ୍ଷଣ । ଶ୍ରୀଚରଣେ ଅଷ୍ଟାଦଶ ଚିହ୍ନରୁ ଜାଣ ॥୬୨॥
ଶୀତ ଖରା ବରଷା ଏ ବାର ମାସରେ । କେତେ ଉତ୍ସବ କରନ୍ତି
କେତେ ରଙ୍ଗରେ । ୬୩ । ସୁନ୍ଦରପଣକୁ କାମ ଦାସ ପରାୟେ । ସନ୍ତୋ-
ଷିତ ସେ ଦେବତା ମାନସ୍ୱୀ ପରାୟେ । ୬୪ । ବଳଭଦ୍ର ନାମେ ତାଙ୍କ
ଅଗ୍ରଜ ଭ୍ରାତ୧୦ । ମହାବଳବନ୍ତ ମହାସୁନ୍ଦର ଶ୍ୱେତ୧୧ । ୬୫ । ମହା-

---

୧ ଚନ୍ଦ୍ରକୁ । ୨ କଂସ ସଦୃଶ ଦୁଷ୍ଟ ରାଜାମାନଙ୍କ ବଂଶକୁ । ୩ ସୂର୍ଯ୍ୟ ।
୪ ଅଭୟଶରଣ୍ୟ ଦେହରେ । ୫ ଅଷ୍ଟପ୍ରକାର । ୬ ତେଜସ୍ୱୀ ।
୭ ମାହାତ୍ମ୍ୟ । ୮ ଅରକ୍ଷରକ୍ଷକ । ୯ ଐଶ୍ୱର୍ଯ୍ୟବନ୍ତ । ୧୦ ବଡ଼ଭାଇ ।
୧୧ ଶୁକ୍ଳବର୍ଣ୍ଣ ।

Digitized by srujan ka@gmail.com

ପ୍ରତାପୀ ସେ ତାଙ୍କ ମହିମା ବଡ଼ । ମସ୍ତକରେ ବହିଥାନ୍ତି ନାଗେନ୍ଦ୍ର-
ଚୂଡ଼ । ୬୬ । ଜଗତ ଧରିବାରେ ସେ ଅତ୍ୟନ୍ତ ଦମ୍ଭ । ଜଗଗରେ୨
ଯେବେ ଶୋଭି ରଜତସ୍ତମ୍ଭ । ୬୭ । ମୁଦ୍ରାଶକ୍ତି ମାରଣେ ସେ ମହା-
ପ୍ରବଳ । ଶ୍ରୀକଣ୍ଠସ୍ଥଳେ ବହନ୍ତି ହଳ ମୂଷଳ ।୬୮। କାଦମ୍ବୀରସରେ୩
ସେ ସର୍ବଦା ଭୋଳ । ଘୂମାଇ ପକାଉଥାନ୍ତି ଅରୁଣଲୋଳ୪ ।୬୯ ।
କୁନ୍ଦେନ୍ଦୁ୫ ଶଙ୍ଖ କର୍ପୂର କୁମୁଦ କାନ୍ତି୬ । ଶ୍ରୀଅଙ୍ଗକୁ ତାହାଙ୍କର ସର
ନୁହନ୍ତି । ୭୦ । ରଜତପର୍ବତେ କୃଷ୍ଣମେଘ ପ୍ରାପ୍ତେ । କଟତଟେ ନୀଳା-
ମ୍ବର ଶୋଭୁକୁ ଯାଏ । ୭୧ । ଝଟିକପର୍ବତ ଶୃଙ୍ଗ ପ୍ରାୟେ ଶ୍ରୀଅଙ୍ଗ । ୭
କୋକନଦ୭ ପ୍ରାୟ ନୟନ ରଙ୍ଗ । ୭୨ । କୋଟି କୋଟି ପୂର୍ଣ୍ଣଚନ୍ଦ୍ର
ଜିଣେ ଶ୍ରୀମୁଖ । ଅବଲୋକନ ମାତ୍ରକେ ପଳାଇ ଦୁଃଖ ।୭୩। ଏମନ୍ତ
ସେ ବଳଭଦ୍ର ଭାଇଙ୍କ ସଙ୍ଗେ । ରତ୍ନ ସିଂହାସନେ ବସେ ବିବିଧ ରଙ୍ଗେ ।
ଦେଖିବାକୁ ବେନି ଅଙ୍ଗ ଅମ୍ଭର ଏକ । ଧନ୍ୟ ଧନ୍ୟ ଧନ୍ୟ ନୀଳା-
ଚଳନାୟକ ।୭୪। କମଳା ନାମ୍ନୀ ... ପାଟମହିଷୀ । ତାହାଙ୍କ
ମହିମା କେ କହିବ ବିଶେଷି । ୭୬ । କୋଟି କୋଟି ଇନ୍ଦ୍ରାଦି କୁବେର
ସମ୍ପତ୍ତି । ଯାହା କଟାକ୍ଷକୁ ଅପେକ୍ଷା କରଥାନ୍ତି । ୭୭ । ଅଇଷ୍ଟଦାୟିନୀ
ଅନ୍ନପୂର୍ଣ୍ଣା ସେ ଦେବୀ । ଅଷ୍ଟ ଅଇଶ୍ୱର୍ଯ୍ୟ ପାଇ ଯାହାଙ୍କୁ ସେବି । ୭୮ ।
ଦାରିଦ୍ର୍ୟଦଣ୍ଡିନୀ ତ୍ରୈଲୋକ୍ୟଜନବତ୍ସଳା । ପ୍ରସନ୍ନଆନନା୯ ପଦ୍ମହାସୀ୧୦ ଧ୍ରୁଶା-
ଳା୧୧ ।୭୯। ଜଗତଜନନୀ ଜଗନ୍ମୋହନ୧୨ ପ୍ରାଣ । କେ ଅବା କହିବ
ତାଙ୍କ ସୁନ୍ଦରପଣ । ୮୦ । ସେ ଯାହାକୁ କୃପାକଟାକ୍ଷରେ ଚାହାନ୍ତି ।
ସମସ୍ତ ସୁନ୍ଦରମାନ ତହିଁରେ ଥାନ୍ତି । ୮୧ । ଜଗନ୍ନାଥ ଦେବ ନରପ-
ତିଙ୍କ ପାଦେ । କିଞ୍ଚିନ୍ତି ସେବା କରନ୍ତି ଏ ଅପ୍ରମାଦେ୧୩ ।୮୨। ଏମନ୍ତ

---

୧ସମର୍ଥ । ୨ପୃଥିବୀରେ ୩କଦମ୍ବଜାତ ମାଦକଦ୍ରବ୍ୟ ।
୪ରକ୍ତବର୍ଣ୍ଣ ଚକ୍ଷୁଲୋଳା । ୫କୁନ୍ଦଫୁଲ ଓ ଚନ୍ଦ୍ର । ୬ଶୋଭା । ୭ପ୍ରଷ୍ଫୁ-
ଟିତ ରକ୍ତପଦ୍ମ । ୮ନୀଳପର୍ବତ ପ୍ରଭୁ ଜଗନ୍ନାଥ । ୯ହର୍ଷମୁଖୀ । ୧୦ପଦ୍ମ-
ବନବାସିନୀ । ୧୧ସଜ୍ଜନଭଦ୍ରା । ୧୨ଜଗନ୍ନାଥ । ୧୩ନିର୍ଦ୍ଦିଷ୍ଟରେ ।

Digitized by srujan ka@gmail.com

ହୋଇ ଯହିଁରେ ଥିବ ହିମଗିରି । ଅପୂରୁବ ଅବା କେଉଁ ସୁରଗିରି ॥ ଯାହା ବୋଲେ ଧନପତି୧ ଅଳକାନାଥ । ଅମରାବତୀରେ୨ ପ୍ରଭୃତି କୁଳ ହୋଇଥା୪ । ୮୪ । ସେ ଶିଷ୍ଟ ଝମ୍ପଣ୍ଡି କେ କହିବାରେ କ୍ଷମ । ଯାହା ନାମେ ପଡ଼ିଗଲୁ ନ ଦଣ୍ଡେ ଯମ । ୮୫ । ଏ ସଂସାରେ ଯେଉଁ ପ୍ରଭୁ କଥା ପ୍ରସଙ୍ଗ ।୬କାଳସର୍ପ ଅଧାଉଲୁ କରଇ ଭଙ୍ଗ । ୮୬ । ଯାହା ନାମ ସ୍ମରି ଅଶ୍ରୀଳ ଗତି ପାଆନ୍ତି୭ । ନ ହଅଇ ସଙ୍ଘାତ ସଘାତ ନେଇ- କୁ୭ । ୮୭ । ପକ୍ଷୀରାଜ ବୋଲି ତାଙ୍କ ଶ୍ରୀପାଦ ବାହୁ୯ । ସାମବେଦ ଉଚ୍ଚାରଇ ଯାହା ଗତିରୁ । ୮୮ । ସେ ବାରୁ୧୦ ଅଶ୍ୱେହି ଯେବେ କରନ୍ତ ହଳେ । ମନ ପବନ ଶଙ୍କିତ ହୁଅଇ ଲୋକେ । ୮୯ । ଅତି ଉଚ୍ଚ୧୧ ପ୍ରାସାଦ୧୨ ଦିଶଇ ସୁନ୍ଦର । ଅବଲୋକନେ ସମସ୍ତ କଲ୍ମଷ ହର୧୩ । ୯୦ । ସୁଧାଲେପେ୧୪ ପୂର୍ଣ୍ଣଚନ୍ଦ୍ର ପରି ଉଜ୍ଜ୍ୱଳ । ଚେରୁ କମରେ କର ଦିଶଇ ମଣ୍ଡଳ୧୫ । ୯୧ । ବିଶ୍ୱକର୍ମାଙ୍କର କମ ଗର୍ବକୁ ନାଶେ । ଉପମାକୁ ଦିଶେ ମନୁଷ୍ୟମାନଙ୍କେ ଯେଉଁ ପ୍ରାସାଦ୧୬ ମସ୍ତକେ ପତା- କାନିତ୧୭ । ଉଡ଼େ ସାତ-ଅଶ୍ୱରଥେ୧୮ କରଇ ଘାତ । ୯୩ । ନାହିଁ ଅହଙ୍କ କୁତର୍ପ ପରସ୍ପ ଚତି । ଉଚେ ଉର୍ଦ୍ଧ ପଡ଼ିବାରେ ଏମନ୍ତ ରୀତି । ୯୪ । ଅସ୍ତ ଯାଅ ବୋଲଇ କ ଅର୍ଦ୍ଧ ଜନକୁ । ଏ ବାହାରେ ଅନ ନ ଅଁଧଇ ମନକୁ ॥ ଅରତବନ୍ଧନ ପ୍ରଭୁ ଶରଣଦାନ୍ତ । ଏନ୍ତୁ ଅନରୂପେ ବାନାଠାରେ ବଳଇ୧୯ ॥ କେତେହେଁ କହିବ ସେ ପତାକା ଚହ୍ନିଏ । କହିବସିଲେହେଁ ପଦ ହେବ ବହୁତ । ୯୬ । ବହୁତ ହେଲେହେଁ ନ ଭୁଟଇ ଅମୃତ । ଅମୃତୁଁ ଅଧିକ ଜଗମୋହନ ଗୀତ । ୯୮ । ଜଗନ୍ନାଥ

---

୧କୁବେର । ୨ସ୍ୱର୍ଗରେ । ୩ରାଜା । ୪ଇନ୍ଦ୍ର । ୫ଅତ୍ରବର୍ତ୍ତୀ ପୋଷ୍ଟା ପନ । ୬ମୁକ୍ତିପଥକୁ । ୭ନରକ ସମ୍ପର୍କ ସାକ୍ଷାତକୁ । ୮ଗରୁଡ଼ । ୯ଶ୍ରୀପାଠଘୋଡ଼ା । ୧୦ଘୋଡ଼ା । ୧୧ଉଚ୍ଚ । ୧୨ଦେଉଳ । ୧୩ପାପକ୍ଷୟକାରୀ । ୧୪ଚୂନବୋଳା ହିବାହ୍ରେ । ୧୫ସୁନ୍ଦର । ୧୬ଦେଉଳ । ୧୭ପତାକା ବସ୍ତ୍ର । ୧୮ସୂର୍ଯ୍ୟଙ୍କ ରଥରେ । ୧୯ଠାରୁ କହଇ ।

Digitized by srujan ka@gmail.com

ଦେବ ନରପତିଙ୍କ ସଭା । ସୁଧର୍ମାସଭାରୁ୧ ବଳନ୍ତି ସେ ଶୋଭା । ୯୯ ।
ଉତ୍ତମ କବି ପଣ୍ଡିତ ଗାୟକମାନେ । ବନ୍ଧ ବନ୍ଧ ତାଙ୍କ ବେଦ ପୁରାଣ
ଶାନ୍ତେ । ୧୦୦ । ଯେ ଯାହା ବିଦ୍ୟାରେ କୃତମୁଖ୨ ସମସ୍ତ । ଅନ
ବେଧାବନମାନ 'ଅଛନ୍ତି କେତେ । ୧୦୧ । ବ୍ରାହ୍ମଣ ନିଯୋଗ
ତାହାଙ୍କର ଅନେକ । ପଣ୍ଡା ପଶୁପାଳକ ସାମନ୍ତ ସେବକ । ୧୦୨ ।
ମନ୍ତ୍ରୀ ମାର୍କଣ୍ଡ ସବୁ ବୁଦ୍ଧିମଣାଙ୍କୁ । ତଣ୍ଡୀ ବଇଭବୀ ଉତ୍ସେ ନଗ-
ରଣାଙ୍କୁ୩ ।୧୦୩। ଏମନ୍ତ ଶ୍ରୀଜଗନ୍ନାଥ ଦେବ ନୃପତି । କମ୍ବୁକଣ୍ଠକରେ୪
ଅତି ସୁଖେ ଅଛନ୍ତି । ୧୦୪ । କ୍ଷମାଦାତା ଗୁଣଗ୍ରାହୀ ଭକତପ୍ରିୟ ।
କାହାର ବିଷୟରେ କୁହନ୍ତି ନିର୍ଦ୍ଦୟ । ୧୦୫ । ଦୁଃଖିଲୋକ ଜଣାଇଲେ
ଅଗେ ଶୁଣନ୍ତି । ନ କହନ୍ତି କେବେ ହୃଦୟ କାଣର୍ଣ୍ଣ । ୧୦୬ । ଅତି
ବଡ଼ ବଡ଼ଙ୍କ ସେ ଦେବାଧିରାଜ । ଅହେ ଜନମାନେ ଏବା ତାହାଙ୍କୁ
ଭଜ । ୧୦୭ । ଅବଶ୍ୟ ତାରିବେ ସେ ଅନନ୍ତ ସଂସାରୁ । ଅତିହିଁ
ଦାରୁଣ କାଳଦଣ୍ଡ୫ ହୁଂସାରୁ । ୧୦୮ । ଦୀନବନ୍ଧୁ ବୋଲି ବୋଲ
ହେଲା ନ କର । ନ କର କର ଯେମନ୍ତ ଇଚ୍ଛା ତୁମ୍ଭର । ୧୦୯ ।
ମଧୁମାଛି ମୁଖଁ ମଧୁ ହେଲେ ବାହାର । ତାହା ନିଷ କେହି ନ
କରଇ ଅହାର । ୧୧୦ । ପଙ୍କୁ ଜାତ ହେଲେ ପଦ୍ମ ସବୁର ପ୍ରିୟ ।
ଏ କଥା କେହିଁ ନୁହେ ଶୁଦ୍ଧହୃଦୟ । ୧୧୧ ।

---

୧ ଦେବସଭାରୁ । ୨ କୃତକର୍ମା । ୩ ନଗରସ୍ଥାନକୁ । ୪ ପୁରୁଷୋତ୍ତମ
କ୍ଷେତ୍ରର ନାମ କମ୍ବୁକଣ୍ଠକ । ୫ ଯମଦଣ୍ଡ ।

Digitized by srujan ka@gmail.com

## ଦ୍ୱିତୀୟ ଛନ୍ଦ । ରାଗ — ଗୌରୀ ।

ଅହେ ସାଧୁଜନମାନେ ଏବେ ଶୁଣ ଏକମନେ ଜଗନ୍ନାଥ ଦେବ
ନରପତିଙ୍କ ନୀତି । ରାତ୍ର ଅନ୍ତେ ଅବକାଶ ହୋଇ, ମଲମଚ୍ଛୁ ବଡ଼
ଉତ୍ସାହରେ ଫିଟାଇଲେ ବନ୍ଦେ କରନ୍ତି । ଏଥୁଅନ୍ତେ ସେବକେ ଆସି ।
କପାଟ ଫିଟାଇଁ ଯାଇ ଭିତରେ ପଶି । ୧ । ଯେ ଯାହା ସେବା ଅବୋଧ
ଉଦନ୍ତ ସେ ପଟୁଆରୀ ମଇଲମ୨ ହୋନ୍ତି ପ୍ରଭୁ ଜଗତପତି । ନବ
ପଞ୍ଚକ ଚତୁପ୩ ସମୁଦ୍ର ଫେନ ସ୍ୱରୂପ ଛାଡ଼ିଲାନ୍ତି ଜମନ୍ତେ ସେ ଲାଗି
ହୁଅନ୍ତି । ତହୁଁ ଶ୍ରୀଫଳକୁ୪ ଅନାଇ । ଚଉକ ଉପରେ ବନ୍ଦେ କରନ୍ତି
ଯାଇ । ୨ । ଦାନ୍ତକାଠି ଗୁଆଗୁଣ୍ଡି ଲବଣୀ ଶ୍ରୀଫଳ ପିଣ୍ଡ୫ ସୁବାସଜଳ
ଦର୍ପଣଚୁଣ୍ଡ ଆଣନ୍ତି । ଖଟଣୀ ସେବକମାନେ ଉଚତ ବଧି ବଧାନେ
କାଠିଲାଗି ମାଜଣା ସେବାକୁ ବଢ଼ାନ୍ତି । ଏଥୁଅନ୍ତେ ଜଗନ୍ନିବାସ୬ ।
ଦିବ୍ୟ ବେଶ ଲାଗି ହୋଇ ହୁଅନ୍ତି ବେଶ । ୩ । ସେ ସୁବେଷ
ଶୋଭା କହୁଁ ଉପମା ନ [illegible] କାହୁଁ କେବଳ ମାତ୍ରକ ମୋହ
ହୁଅଇ ମନ । ବଚନକୁ ଅଗୋଚର ପୁଲକ ଉଠେ ଶରୀର ଅପଲକ
ହୋଇ ରହେ ବେନି ନୟନ । ବଚନ୭ ଖଣ୍ଡୁଆ ଦୋଷଡ଼ା । ବଚନକୁ
ବଚନ୮ ସେ ଧଇର୍ଯ୍ୟ ବନ୍ଧା । ୪ । ସୁବର୍ଣ୍ଣ କେତକୀ ତୋଷ ଯେମନ୍ତ
ଦିଶଇ ତାସ ସେହୁ ରୂପେ ଦିଶଇ ସେ ମନ୍ଦର୍ଦ୍ଦିଗ । ମଣି କୁଣ୍ଡଳ
ମେଖଳା୯ କଟି ବାନ୍ଧି ମାଳା ଏକେ ଏକେ ମହାସୁବେଷ ମଦନ
ପଗ । ଯେଉଁ ବେଶ ଦେବାଧିରାଜ । ସେହିରୂପେ ଘେନ ବଳଭଦ୍ରଙ୍କ
ସଜ । ୫ । ଅଭେଦ ଭେଦକୁ କର ଏକାବେଳେ ମାଟିଂସାର ଏକାଖ
ବେଳେ,ମଣୋହିରେ ବିଜେ କରନ୍ତି । ଏ ପୀତ ସେ ନୀଳାମ୍ବର୧୦

---

୧ ନିଦରୁ ଉଠି । ୨ ବେଶ ଉତାରିବା । ୩ ବସ୍ତ୍ର ବିଶେଷ ।
୪ ନଡ଼ିଆ । ୫ ଖଣ୍ଡିନଡ଼ିଆ । ୬ ଜଗନ୍ନାଥ । ୭ ଚନ୍ଦ୍ରିକା । ୮ ଅତି
ଅସ୍ଥିର୍ଯ୍ୟ । ୯ କଟିକିଙ୍କିଣୀ । ୧୦ ନୀଳସୁନ୍ଦର ଜଗନ୍ନାଥ ପୀତବାସ ଏବଂ
ଶ୍ୱେତସୁନ୍ଦର ବଳରାମ ନୀଳବାସ ପରିଧାନକାରୀ ।

Digitized by srujan ka@gmail.com

ହେଲେହେଁ ମିତ୍ର ଅମୃତେ ହୁଇ ଅନୁରୂପଙ୍କେ ସେ ଲାଗି ହୁଅନ୍ତି ।
ଏକ ଅମ୍ଭା ଦେନ ଶରୀର । ଏହିରୂପେ ସୁଭଦ୍ରା ବନ୍ଦେଣୀ ତାଙ୍କର ।୬।
ଏମନ୍ତେ ସେ ଅବକାଶ ହୁଅନ୍ତି ୨ ଜଗନ୍ନିବାସ ଅନେକ ଲୋକ ପ୍ରବେଶ
ହୁଅନ୍ତି ଅଛି । କେ ଆଲଟ କେ ଗୃମର କେ ପଖ୍ୱା ନାନାପ୍ରକାର
ବୀଣା ରନା ମର୍ଦଳ କେ ଯେନ ବଂଶୀ । ଅନନ୍ଦେ ଦର୍ଶନ କରନ୍ତି ।
ଅଶେଷ ହୁବଡ ହୁଃଖମାନ ହରନ୍ତି ।୭। କେ ହରଷେ ନୃତ୍ୟ କର
କେ ବୋଲନ୍ତି ହର ହର ହସ୍ତବଳ କ୍ରିସ୍ତବୁଳ କେ ଜୟେ ଜୟେ ।
ଏହି ପ୍ରକାରେ ଗର୍ଜନ ଚନ୍ଦନ ପଠି ପ୍ରବଳ ଜଗନ୍ମୋହନରୁ ସିଂହ-
ଅସନ ଯାଏ । ନୀଳଗିର କବଳପାଳ ୪ । ପୂର ହୁଅନ୍ତି ନାନା-
ପ୍ରକାର ଲୋକ । ୮ । ବ୍ରହ୍ମାଦି ଶଙ୍କର ଦେବେ ଯେ ଯାହାର ଗୀତ
ସ୍ତବେ ଶ୍ରୁତି ମଧ୍ୟେ ସ୍ୱର ଥିଲା ପ୍ରାପ୍ତେ ରହନ୍ତି । ଅନ ଅନ ଦେବ
ଦେବୀ ଯେତ ମାନବଙ୍କ ଛବ ଜଗନ୍ନାଥ ଦେବଙ୍କୁ ଦର୍ଶନ କରନ୍ତି ।
ଧନ୍ୟ ଧନ୍ୟ ଧନ୍ୟ ସେ ଅଛନ୍ତି । ଲ... ଦେଖିବାରେ ସେ କାଳ
ଶୋଭା । ୯ । ଅବକାଶ ଶେଷ ଡାକ ପଡନ୍ତି ଯାହାର ଲୋକ ହେଟା
ଥର ହୁଅରେ ରହନ୍ତି ହୁଅରୀ । ଗୋପାଳବଲ୍ଲଭ ନାମ ଶୀତଳଭୋଗ
ଉତ୍ତମ ମନୋହର କରନ୍ତି ପ୍ରଭୁ ଶାରଙ୍ଗଧାରୀ ୭ । ମଣ୍ଡା କୋରା ଲବଣୀ
ଦହି । ଶାକର ସନ୍ଧ୍ୟାପୁଜି ସିନ୍ଦୂରା ଖଇ । ୧୦ । ଏ ଆଦି ଅନେକ
ଦ୍ରବ୍ୟ ମନୋହର ତହିଁର ଦେବ ଅଗେନ ସାର ସେ ଶ୍ରୀମୁଖ ଯୋଗନ୍ତି ।
ଶ୍ରୀମହାପ୍ରସାଦ ଅଶେଷ ସେବକମାନେ ହରଷେ ଯେ ଯାହା ଅନୁରୂପରେ
ଯାଉଅଛନ୍ତି । ରହିଥାନ୍ତି ଜଗତେଶ୍ୱର । ଶ୍ରୀମୁଖରେ ହେଉଥାଇ ନୀଳ
ନୂର । ୧୧ । ଅହା ସେ ସମୟ ଦେଖି ମନ ହୁଏ ଯେଉଁ ସୁଖୀ ମନ
ସେ ଜାଣଇ ଜଗବନ୍ଧୁ ଜାଣନ୍ତି । ଏହା ଦେଖୁ ଦେଖୁ ପ୍ରାଣୀ ଅତିବେଳ
ହେବେ ପୁଣି ଇନ୍ଦ୍ରସମ୍ପତ୍ତି ଲ ଭନ୍ତେ ବଡ଼ କରନ୍ତି । ମାନବ-ଶରୀରଙ୍କୁ

୧ହସ୍ତ । ୨ଦର୍ଶନ କରିବାକୁ ସମୟ ଦିଅନ୍ତି । ୩ପାପ । ୪ଶ୍ରୀକ୍ଷେ-
ତ୍ରପାଳ । ୫ ବେଦ ବ୍ରହ୍ମା କର୍ଣ୍ଣ । ୬ ଦୀପ୍ତି । ୭ଶାର୍ଙ୍ଗ ଧନୁଧାରୀ
ଜଗନ୍ନାଥ ।

Digitized by srujan ka@gmail.com

ପାଇ । ଏତେ ସୁଖ ଥାଉଁ ମନ ଆନକୁ ଦେଇ ।୧୨। ଜପ ତପ ଦାନ
ତୀର୍ଥ ପ୍ରମାଣ ଏ ପରମାର୍ଥ୧ କରୁଥିବ ଜଗନ୍ନାଥ ଦର୍ଶନ ଯାଏ ।
ନାନା ଭେଟ ନାହିଁ କୂଟ୨ ଶୈତ ବିଗ ବଣିକ ବାଟ ଉଦର ନିମନ୍ତେ
ଶିନା ସବୁ ଉପାଅ୩ । ଅନ୍ଧାର ନାଶକୁ ପ୍ରଦୀପ ସ ଆନନ୍ଦବର୍ଦ୍ଧ୪ ଦର୍ଶନେ
ସ ଜର୍ମ ସ୍ତୂପ । ୧୩ । ଏକବ ଶୁଣ ଦିବ୍ୟ ରସ ସକାଳଧୂପ ପ୍ରବେଶ
ହେବା ସମୟରେ ଲୋକେ ବାହାର ହୋଏ । ପାନ ପଡିହାରୀ ପାଇ
ଅପଣା ସେବା ଛଡାଇ ମନୋହରେ ବଢନ୍ତ ପ୍ରଭୁ ଦେବାଧିସ୍ୱେ ।
ନାଡ଼ୀ ନଡ଼ୁ କଦଳି ପୂଲୀ । ନାନାରସେ ପିଠା ସୁଧାରସକୁ ବଳି ॥
ଶେଚଡ଼ୀ ଦଧି ଅବଢ଼ା ନାନାଦି ପ୍ରକାରେ ବଢ଼ା ବଢ଼ା ହୋଇ ଦିବ୍ୟ
ବ୍ୟଞ୍ଜନାଦି ଯେ ଯେତେ । ଅହୋ ଅହୋ ଖୋଜ ତାଙ୍କ ଆସ୍ୱାଦୁପାଶକୁ
ତାଙ୍କ ନେଇ ଆନ୍ତି ମହାସୁପକାର ତା କେତେ । ଯହୁଁ ଦେବଗଣ ତୃପ୍ତ-
ହେତା । ବାଢ଼ି ବାକୁ ଉଦ୍ଭି କ୍ଷୀରସାଗରସୁତାଙ୍କ ।୧୫। ଧୂପ ଦୀପ ଅନ୍ତେ
ନୃତ୍ୟ ପଡିବା ଶୋଷକୁ ତୃଷ୍ଣା ହୋଇଥାନ୍ତି ଦେଖିବାକୁ ଲୋକେ
ଅଳତି । ଚନ୍ଦ୍ରକୁ ଚକୋର ପ୍ରାୟେ ହୋଇ ଏକଭାବ ଲୟେ କପାଟ
ଫିଟିଲେ ଜଗଜ୍ୟୋତି ଦେଖନ୍ତି । ଜୟ ଜୟ ଶବଦେ ଗୋଳ । ପ୍ରଭୁ
ହୁଅଇ ସ ସେ ଜନ୍ମ ସ୍ଥାନ । ୧୬ । ସେ ଅଳତି ବନ୍ଦାପନା
ଶ୍ରୀମୁଖଚନ୍ଦ୍ରର ଜ୍ୟୋତ୍ସ୍ନା୭ ଦେଖିବାର ଲାଗି ଥାଇ ଜନ୍ତୁ ଜନ୍ମାନ୍ତେ ।
ଜନନୀଜଠରକେ ଫଳ ନାହିଁ ଅଉ ବେନେ ଏମନ୍ତ ବେଦ ମନେ
ନାଚନ୍ତି ମନ୍ତ୍ରେ ୯ । ତନ୍ତୁ ହୁଏ ସାହାଣ ମେଳା୮ । ଅହୋ ସେ ସମୟ
ସୁଖ ନାହିଁ ଦେଖିଲା । ୧୭ । କେ କେତେ ରୂପେ ଜାଣନ୍ତି ଭେ
ଦ୍ରବକତ ସ୍ତୁତି ଶୁଣନ୍ତି କେ କେତେ ରୂପେଣ ତହୁଁ କରେ ତାହାଙ୍କ ।
ଯେତେ ଜାଣିଥିଲେ ବଳି ପଡୁ ହୋଇ ରହି ହୋଇ ବୋଲିବାକୁ
ଶକ୍ୟ ନୁହେଁ ନାହିଁ କାହାର । ସର୍ବସ୍ୱକ୍ଷୁଧା ଅନ୍ଧକାରଧାନ । ସବୁର

---

୧ଧର୍ମକାର୍ଯ୍ୟ । ୨କପଟ ବ୍ୟବହାର । ୩ଗତି କରଣ ପ୍ରଭୃତି । ୪ଆନନ୍ଦ ଓ ସୁଖର ମୂଳକାରଣ ଜଗନ୍ନାଥଦେବଙ୍କ । ୫ଲକ୍ଷ୍ମୀଠାକୁରାଣୀ । ୬ଜଗନ୍ନାଥଦେବଙ୍କ । ୭କିରଣ । ୮ସମସ୍ତଙ୍କ ଦର୍ଶନ ଅନୁମତି ।

Digitized by srujan ka@gmail.com

ହେଲେହେଁ ମିତ୍ର ଅମ୍ବରଂ ହୁଇ ଅନୁରୂପରେ ସେ ଲାଗି ହୁଅନ୍ତି । ଏକ ଅମ୍ବା ବେଢ଼ ଶରୀର । ଏହିରୂପେ ସୁଭଦ୍ରା ବହେଣୀ ତାଙ୍କର ।୬। ଏମନ୍ତେ ସେ ଅବକାଶ ହୁଅନ୍ତି² ଜଗନ୍ନିବାସ ଅନେକ ଲୋକ ପ୍ରବେଶ ହୁଅନ୍ତି ଅଛି । କେ ଅଳଙ୍କ କେ ଗମ୍ଭୀର କେ ପଣ୍ଡା ନାନାପ୍ରକାର ବୀଣା ରବାବ ମର୍ଦ୍ଦଳ କେ ଘେନି ବଇଁଶୀ । ଆନନ୍ଦେ ଦର୍ଶନ୍ତି କରନ୍ତି । ଅଶେଷ ହୁଡହଡ³ ହୁଃଖମାନ ହରନ୍ତି ।୭। କେ ହରଷେ ନୃତ୍ୟ କର କେ ବୋଲନ୍ତି ହରି ହରି ନସ୍ତଚନ୍ଦ୍ର ନିସ୍ତରୁନ କେ ଜୟେ ଜୟେ । ଏହି ପ୍ରକାରେ ଗର୍ଜନ ଚହଳ ଅତି ପ୍ରବଳ ଜଗମୋହନରୁ ବିଧି-ଅଛନ୍ତି ଯାଏ । ନୀଳଗିରି ନବଯୌବନ⁴ । ପୂର ହୁଅନ୍ତି ନାନା-ପ୍ରକାର ଲୋକ ।୮। ତ୍ରିପୁରାରି ଶଙ୍କର ଦେବେ ଯେ ଯାହାର ଗୀତ ସ୍ତବେ ଶ୍ରୁତିଁ⁵ ମଧ୍ୟେ ସ୍ୱର ଅଳା ପ୍ରାୟେ ରହନ୍ତି । ଅନ ଅନ ଦେବ ଦେବୀ ଧର ମାନବଙ୍କ ଛବ ଜଗନ୍ନାଥ ଦେବଙ୍କୁ ଦର୍ଶନ କରନ୍ତି । ଧନ୍ୟ ଧନ୍ୟ ଧନ୍ୟ ସେ ଅଭୁତ⁶ । ଲ [illegible] ଦେଖିବାରେ ସେ କାଳ ଶୋଭା ।୯। ଅବକାଶ ଶେଷ ତାକ ପଡନ୍ତି ଧାଡ଼ାର ଲୋକ ବେଢ଼ା-ଥିବ ହୁଅରେ ରହନ୍ତି ହୁଅଁଣ । ଗୋପାଳବଲ୍ଲଭ ନାମ ଶୀତଳଭୋଗ ଉତ୍ତମ ମଣୋହି କରନ୍ତି ପ୍ରଭୁ ଶାରଙ୍ଗଧାରୀ⁷ । ମଣ୍ଡା କୋରା ଲବଣୀ ଦହି । ଶାକର ସରୁଆପୁଡି ପିଣ୍ଡଖଜା ଖିରି ।୧୦। ଏ ଆଦି ଅନେକ ଦ୍ରବ୍ୟ ମଣୋହି ଚଢ଼ାଇ ଦେବ ଅତିଗନ ସାର ସେ ଶ୍ରୀମୁଖ ଯୋଗନ୍ତି । ଶ୍ରୀମହାପ୍ରସାଦ ଅଶେଷ ସେବକମାନେ ହରଷେ ଯେ ଯାହା ଅନୁରୂପରେ ଯାଉଅଛନ୍ତି । ଗନ୍ଧ ଥାନ୍ତି ହଗଡ଼ଗଦର । ଶ୍ରୀଅଙ୍ଗରେ ହେଉଥାଇ ନିର୍ମାଲ୍ୟ ହୁର ।୧୧। ଅହୋ ଯେ ସମ୍ପ ଦେଖି ମନ ହୁଏ ଯେଉଁ ସୁଖୀ ମନ ସେ ଜାଣଇ ଜଗବନ୍ଧୁ ଜାଣନ୍ତି । ଏହା ଦେଖୁ ଦେଖୁ ପ୍ରାଣୀ ଅର୍ଦ୍ଧବିଜ ହୁବେ ପୂର୍ଣ୍ଣ ଇନ୍ଦ୍ରସମ୍ପଦ୍ଧି ହୃଦ୍ଧୃତିଡ଼ କରନ୍ତି । ମାନବ-ଶରୀରଙ୍କୁ

---

୧ବନ୍ଧୁ । ²ଦର୍ଶନ କରିବାକୁ ସମୟ ଦିଅନ୍ତି । ³ପାପ । ⁴ଶ୍ରୀକ୍ଷେତ୍ରପାଳ । ⁵ବେଦ ଜନ୍ମା କର୍ତ୍ତା । ⁶ଦୀପ୍ତି । ⁷ଶାର୍ଙ୍ଗ ଧନୁଧାରୀ ଜଗନ୍ନାଥ ।

Digitized by srujan ka@gmail.com

ପାଇ । ଏଥେ ସୁଖ ଥାଉଁ ମନ ଆନକୁ ଦେଇ ।୧ ।ଜପ ତପ ଦାନ
ତୀର୍ଥ ପ୍ରମାଣ ଏ ପରମାର୍ଥ୧ କରୁଥିବ ଜଗନ୍ନାଥ ଦର୍ଶନ ପାଏ ।
ନାନା ହାଟ ବାଟ କୂଟ୨ ଶ୍ରେଣୀ ଦିଶ ବଣିଜ ବାଟ ଉଦର କିମନ୍ତେ
ସିନା ସବୁ ଉପାୟେ । ଅନ୍ଧାର ନାଶକୁ ପ୍ରଦୀପ ୩ ଆନନ୍ଦକନ୍ଦ୪ ଦର୍ଶନେ
ଜ କର୍ମ ସ୍ତୂପ । ୧୩ । ଏଥିବ ଶୁଣ ଦିବ୍ୟ ରତ୍ନ ସିଂହାସନ ପ୍ରବେଶ
ହେବା ସମୟରେ ଲୋକେ ବାହାର ହୋଏ । ପାନ ପଡ଼ିହାରୀ ଯାଇ
ଆପଣା ସେବା ଜଣାଇ ଅଣେଣାକୁରେ ବଢ଼ନ୍ତ ପ୍ରଭୁ ଦେବାଧିସେ ।
ନାଡ଼ୀ ନଡ଼ କଦଳି ପୂରୀ । ନାନାରସେ ପିଠା ସୁଧାରସକୁ ବଳି ॥
ଖେଚଡ଼ୀ ଦିବ୍ୟ ଅବଢ଼ା ନାନାବିଧ ପ୍ରକାରେ ବଡ଼ା ବଡ଼ା ହୋଇ ଦିବ୍ୟ
ବ୍ୟଞ୍ଜନାଦି ଯେ ପେଡ଼ ।ଅଡ଼ୋ ଅଡ଼ୋ ହୋଇ ତାଙ୍କ ଆସନୁ ପାଶକୁ
ତାଙ୍କ ନେଉଥାନ୍ତି ମହାସୁପକାର ତା କେତେ । ଯହୁଁ ଦେବଙ୍କ ଶ୍ରେ-
କତା । ବାଢ଼ିବାକୁ ତହିଁ କ୍ଷୀରସାଗର ସୁତା୫ ।୧୫। ଧୂପ ଦୀପ ଅନ୍ତେ
ଟେରସ ପଡ଼ିବା ଶୋଭକୁ ଦୂରେ ହୋଇଥାନ୍ତି ଦେଖିବାକୁ ଲୋକଙ୍କ
ଅନ୍ଧି । ଚନ୍ଦ୍ରକୁ ଚକୋର ପ୍ରାୟେ ହୋଇ ଏକତାନ ଲୟେ କପାଟ
ଫିଟିଲେ କଗନ୍ନେ ଯାଇ୬ ଦେଖନ୍ତି । ଜୟ ଜୟ ଶବଦେ ଗୋଳ । ପ୍ରତେ
ହୁଅଇ ସେ ସେ କନିଷ୍ଠ ଉତ୍କଳ । ୧୬ । ସେ ଅଳତି ବନ୍ଦାପନା
ଶ୍ରୀମୁଖଚନ୍ଦ୍ରର ଜ୍ୟୋତ୍ସ୍ନା ୭ ଦେଖିବାର ଲାଗି ଥିଲା ଜନ୍ତୁ କଳ୍ପ କଳ୍ପେ ।
କନକଚନ୍ଦ୍ରବଦନେ ଏନ ନାହିଁ ଅଉ ବେଳେ ଏମନ୍ତ ବସୁଧ ମଣ୍ଡଳେ
ନାଚନ୍ତି ମର୍ତ୍ତ୍ୟ । ତହୁଁ ହୁଏ ସାହାଣ ମେଲା୮ । ଅହା ସେ ସମୟ
ସୁଖ ନାହିଁ ଦେଖିଲା । ୧୭ । କେ କେତେ ରୂପେ ଜାଣନ୍ତି ଭେ
ଟେକବତ ସ୍ତୁତି ଶୁଣାନ୍ତି କେ କେତେ ରୂପେଣ ତହିଁ କରେ ଚାହାଣୀ ।
ଯେତେ ଜଣାଇଥିଲେ ବଳି ପନ୍ଥ ହୋଇ ରଥ ହୋଇ ବୋଲିବାକୁ
ଶକ୍ୟ ତହିଁ ନାହିଁ କାହାର । ସଂସାରର ଘନ୍ଦା ଯାନି । ସବୁର

୧ଧର୍ମକାର୍ଯ୍ୟ । ୨କପଟ ବ୍ୟବହାର । ୩ଗୃହକର୍ତ୍ତ୍ରୀ ପ୍ରଭୃତି । ୪ଆନନ୍ଦ
ଓ ସୁଖର ମୂଳକାରଣ ଜଗନ୍ନାଥଦେବଙ୍କ । ୫ଲକ୍ଷ୍ମୀଠାକୁରାଣୀ ।
୬ଜଗନ୍ନାଥଦେବଙ୍କୁ । ୭କିରଣ । ୮ସମସ୍ତଙ୍କୁ ଦର୍ଶନ ମିଳନମଣି ।

Digitized by srujan ka@gmail.com

କଥା ଶୁଣନ୍ତ ଶ୍ରବଣ ଥେକି । ୧୮ । ଏମନ୍ତେ ଥୋକାଏ ବେଳ ଛତ୍ରରେ ଭୋଗ ଗନ୍ଧକ, ମୈଲମ ହୋଇ ସୁବେଶେ ବଢେ କରନ୍ତ । ବହୁତ ମୂଲ୍ୟ ଅମ୍ବରଂ ବିଶେ ଅତିଅନ୍ଧ୍ରାମ୍ବର ଉତ୍ତମ କଛ ଶ୍ରୀଅଙ୍ଗେ ଲାଗି ହୁଅନ୍ତ । ଫୁଲଡ଼ୁଳମାନ ସୁନ୍ଦରଂ ଫୁଲ ଥାଇ ହୃଦୟ ଦେଖିଲେ ଲୋକର । ୧୯ । ଏମନ୍ତେ ବେଶ ବଢ଼ାଇ ସମସ୍ତ ଲୋକ ଛଡ଼ାଇ ମଣୋହିରେ ବେକ ଭଗ ବଢେ କରନ୍ତ । ଉତ୍ତମ ଅନ୍ନ ବ୍ୟଞ୍ଜନ ଈଶ୍ୱର ମନୋରଞ୍ଜନ ମହାସୁପକାରମାନେ କେଇ କରନ୍ତ । କାଢ଼ି କଡ଼ୁ ଡାଳମ୍ବ ଗଣ୍ଡା । କାକସ ଅରଖା କାନ୍ତ କଦଳ ଇଛା । ୨୦ । ଘୃତପୁରୀ ସରପୁରୀ ଅମୃତରସ ଅବଳୀ ଫୁଲୀ ହଂସକେଳ ଅବି କର୍ପୂରକେଳ । କ୍ଷୀରାକ୍ଷୀରଷା ଅମୃତ ଦୁଧ ଗୋଟଶ୍ଚା ବହୁତ ଦଗ୍ଧାଦଧ ଅବି ଏଥେ ଥାଅନ୍ତ ସ୍ନିଗ୍ଧ । ସରପୁରୀ ଚଢ଼ାଇନେବା । ତିପୁର ସରସତିଅ ମନକୁ ବବା । ୨୧ । ଟାକୁଅ ପାଚଭାତକ ଖଇରଚୂଳ ଅନେକ ଘୋଳ ବଡ଼ା ଅବି କେତେ କେତେ ହୁଅନ୍ତ । ନୈବେଦ୍ୟରେ ତା ନେଇ ସ୍ୱାମୀଙ୍କୁ ବେଇ ଅଷଇ ପନ୍ତ ପନ୍ତ ବଂଶ ପନ୍ତୀବକୁ ଥୁଅନ୍ତ । ଏହିରୂପେ ଭୋଗ ଅପାର । ମଣୋହି କରନ୍ତ ପ୍ରଭୁ ଜଗଦୀଶ୍ୱର । ୨୨ । ଏମନ୍ତେ ଦୁଇ-ପ୍ରହର ଧୂପ ଶେଷେ ଦେବବର ମୈଲମ୍[୨] ହୋଇ ସୁବେଶ ହୁଅନ୍ତ ପୁଣି । ଦ୍ୱାଦଶୋଷ୍ଣୀ[୩] ଲକ୍ଷ୍ମୀ ବଜାଇ ଦେବଦାସ ଛତ୍ରଦି ବଜାନ୍ତ ଲୋକ ହୃଦୟ ଜାଣି । ପହୁଡ଼ିବା ବେଳ ଜାଣନ୍ତ । ଖଟଶେପ ଖଟଶେପଲୋକେ ଆଣନ୍ତ । ୨୩ । ବବଧ ବନ ପିରୁଢ ବରନ୍ଧ କମରେ ଝଲି ନାନା ରତ୍ନ ମଣିମାଳଙ୍କରେ ମଣ୍ଡିତ । ତାର ତାରକ ତାରକୁ[୩] ତପନ କର ବାରଂ-ବାରକୁ[୪] ବାରବାରେ ଏକେ ଏକେ ମହାପଣ୍ଡିତ । କେ କହିବ ସେ ଖଟ ଶୋଭା । କଟ ହୋଇ ରହେ ମନ ନୟନ ଲୋଭା । ୨୪ । ତଥି ପଟୁ ପାଟଭୂଲୀ[୫] ବବଧବର୍ଣ୍ଣେ ମଲୁଲ ଉପରେ ଶୁକଳ ଝିନବାସ ପକାଇ । ଖଟ ଶେପମେଲାପ ଶେଜ ଶେଯାଇ ଏରୂପ ଅପ୍ରାନ୍ତ ଦର୍ଶନ କର

---

୧ବସ୍ତ୍ର । ୨ବେଶ ଉତ୍ତରବା । ୩ରତ୍ନମାନଙ୍କର ଜ୍ୟୋତି ନକ୍ଷତ୍ର ଜ୍ୟୋତିକୁ । ୪ ସୂର୍ଯ୍ୟକିରଣ ସମୂହକୁ । ୫ଭୁଳାପୂର୍ଣ୍ଣ ବସ୍ତ୍ର ।

Digitized by srujan ka@gmail.com

ଅଲଗା ହୋଇ । ପଣ୍ଡିତମନ୍ତ୍ର ଦେବାଧିଦେବ । ଏଥିଅନ୍ତେ ଶୁଣ କ୍ଷେତ୍ର
ବ୍ୟବସ୍ଥା ଯେବ । ୨୫ । ଅନେକ ଦାସ ବୈଷ୍ଣବ ଅନାଥ ଅଭ୍ୟାଗତବର୍ଗ
ଯୋଗୀ ସନ୍ନ୍ୟାସୀ ଯାହାଙ୍କୁ ଯେମନ୍ତ ଆଜ୍ଞା । ଦିଅନ୍ତି ତାଙ୍କୁ ସେରୂପେ
ଏ ତାହାରେ ନାନାରୂପେ ଜଅନ୍ତି ଦୁଃଖୀ ଦରିଦ୍ର ଭିକ୍ଷୁକ ପୁଞ୍ଜ ।
ଦେବାଙ୍କୁ ଏ କୈବଲ୍ୟକ୍ଷେତ୍ର[୨] । ଜଗନ୍ନାଥ ଦେବ ନୃପବର ସେ
ପାତ୍ର । ୨୬ । ଅଭ ଯେ ନାହିଁ ଥିବ କାହିଁ ଦେଖିଲା ଶୁଣିଲା ନାହିଁ
ନୋହିବ ନୋହିବ ଏଡ଼େ ବଡ଼ ଠାକୁର । ଏହି ସେନ ସିନା ଯେବେ
ବ୍ରହ୍ମାଦି ଶଙ୍କର ଦେବେ କଙ୍କର ରୂପଙ୍କୁ ସୀଉକାର ତାଙ୍କର । ଅସ୍ମେ-
ମାନେ ଏମନ୍ତ କଡ଼ । କ୍ଷଣରଙ୍ଗ ଦେହ ଯେନ ବୋଲାଉଁ ବଡ଼ । ୨୭ ।
ଏବେ ଅପରୂପ ହେବା ପ୍ରସଙ୍ଗ ଶୁଣ କହିବା ଅସ୍ତଅଚଳରେ
ଦିନବନ୍ଧୁ[୩] ପ୍ରବେଶ । କମଳହିଁ ସମୁଦ୍ରିତ କୁମୁଦମୋଦହିଁ ବଦତ
ଚକ୍ରବାକ ଚକ୍ରବାକୀ ସଙ୍ଗ ବିନାଶ । ଅନ୍ତର ହୁଅଇ ଦିବସ । ପୁରେ
ପୁରେ ପ୍ରଦୀପ ପ୍ରତାପ ପ୍ରକାଶି । ୨୮ । ସନ୍ଧ୍ୟା ସ୍ମରନ୍ତି ଦ୍ୱିଜେ
ଦେବପୁରେ ଶଙ୍ଖ ବାଜେ ଘୋର ମନ୍ଦ୍ର[୫] ସ୍ୱରେ ଚଉଦିଗେ ଶୁଭଇ ।
ନାହିଁ ନାହିଁ ତିନଲୋକ ଅନାଥଲୋକ ରକ୍ଷକ ଜଗନ୍ନାଥ ଦେବ-
ରାଜ ପରାପ୍ତେ ହୋଇ । ଏହା ଶୁଣି ଶ୍ରୀ ଦେବରାଜେ । ଅପରୂପ
ହୋଇଁ ଅବକାଶରେ ବଜେ । ୨୯ । ଅଲପ କଦାଚଳସେ ନୟନ
ଧୂମିତ ଦିଶେ ଶ୍ରୀମୁଖଚନ୍ଦ୍ର ଦଶଇ ଅତି ସୁନ୍ଦର । ଜନ ହୃଦୟ-
କୁମୁଦ ନୟନ ସୁଖ ସମ୍ପଦ ଭକତବୃନ୍ଦ-ଚକୋର ଆନନ୍ଦପୂର ।
ଜୟ ଜୟ ଶବଦ ଗୋଳ । ପ୍ରତେ ହୁଅଇ କ୍ଷୀରସିନ୍ଧୁ ଉଲ୍ଲୋଳ ॥
ଅନେକ ଦୀପ ବିଦ୍ରୁମ ଜଳନ୍ତି ସେ ଧାଡ଼ି ଧାଡ଼ି ଥିଛନ୍ତି ଦେବସପଗ
ହୋଇ ପ୍ରକାଶ । ବୃନ୍ଦ ଦୀପ ଅର୍ଚ୍ଚି ଲେଖନ୍ତେ ଭନ୍ଦ ଉଦିଆ ଏହିତେ
ଚନ୍ଦ୍ର ଉଦେକାଳେ ଚନ୍ଦ୍ର ଉଦୟ ନାହିଁ ଏକେତ ସେ ଜଗମୋ-
ହନ । ଅମୋଦେ ଅମୋଦ କରେ ଜଗତ ମନ । ୩୧ । ଅନେକ
ଅଲଟ ପଙ୍ଖା ଚାମର ନୃହଇ ଲେଖା ପଡ଼ିଚି ଗହଳେ ପଶି ଯାଇ

୧ ବ୍ରାହ୍ମଣ । ୨ ମୁକ୍ତିକ୍ଷେତ୍ର । ୩ ସୂର୍ଯ୍ୟ । ୪ ଆନନ୍ଦ । ୫ ଗମ୍ଭୀରଧ୍ୱନି ।

Digitized by srujan ka@gmail.com

ନୁହଇ । ଅନେକ ଦୁଅରେ ଥାଇ, ଗୃହି ଲୋକ ଦର୍ଶନ ମାତ୍ର ପରମ-
ଆନନ୍ଦ ସୁଖ ମନକୁ ଦେଇ । ଦ୍ୱାରେ ରହିଥାନ୍ତି ଦୁଆରୀ । ବଡ଼ ବଡ଼
ପୋଡ଼ାବେତମାନଙ୍କୁ ଧରି । ୩୨ । ଖାଟ ଶେଯ ଲୋକେ ଯାଇଁ
ଖାଟ ଶେଯ ଘେନି ଯାଇ ଯତ୍ନ କରି ଯେ ଯାହାର ସ୍ଥାନେ ରଖନ୍ତି ।
ଗୃହସ୍ଥା ସେବକେ ନେଇ ଗନ୍ଧ ଗୃହସ୍ଥା ଖଟଇ ଖଟୁଣୀ ସ୍ୱାମନ୍ତ-
ମାନେ ସେବା କରନ୍ତି । ଅହା ସେ ସୁବେଶ ଚରିତ । ସୁମରିଲେ ଜନ୍ମେ
ନାଶ ହୁଏ ଦୁରିତ । ୩୩ । ବିବିଧ କୁସୁମ ଗନ୍ଧ ବିଶଇ ଯେମନ୍ତ
ଶୋଭା ତାହା କେ ବଚନେ କହି କରିବ ଶେଷ । ସହସ୍ରେ ମୁଖରେ
ଶେଷ୍ ସହସ୍ରେ ବରଷେ ଲେଖା କରି ନ ପାରିବେ ସେଉଁ ଶୋଭାର
ଲେଶ । ଅହା ସେ ଶ୍ରୀମୁଖମଣ୍ଡଳ । ଯାହା ଲାଗି ଶୋଭା ଅବତଂଶ
କୁଣ୍ଡଳ । ୩୪ । ଯେଉଁ ଶ୍ରୀଅଙ୍ଗ ଭୂଷଣମାନଙ୍କର ବର ଭୂଷଣ ରହି
ନାହିଁ ମଣ୍ଡନକୁ ମଣ୍ଡନ କରି । କେବଳ ଈଶ୍ୱର ଅଙ୍ଗ ହେଲେ ଆଭ-
ରଣ ଭଙ୍ଗ ଅଉ ଅଧିକ ଚାରୁଶୋଭା ଶିରୀ । ଦୁହେଁ ଦୁହିଙ୍କି
ସେ ଭୂଷଣ । ଚନ୍ଦ୍ର କଷି ଢଳ ବଦ୍ଧ୍ୟ ପରାପ୍ତେ ଜାଣ । ୩୫ । ଏମନ୍ତ
ଅମୂଲ୍ୟ ବେଶ ବଢ଼ାଇ ଜଗନ୍ନିବାସ ମନୋହି କରନ୍ତି ସଙ୍ଗେ
ଅଗଜ ହେନ । ଅନେକ ରୂପେ ଅମୃତମନୋହି ଦ୍ରବ୍ୟ ବହୁତ
ଷଡ଼ରସେ ତାଆନ୍ତୁ ଚିତ୍ରନନ୍ଦନୀ । କେତେ ତା କହିବ ବିସ୍ତାର ।
ମନୋହି ଶେଷରେ ଯାହା ଲାଗି ଜିତ୍ତିର । ୩୬ । ଧୋଗ ଶେଷେ
ଆଚମନ କରାଇ ଜଗମୋହନ ଶ୍ରୀମୁଖ ପୋଛି ବଢ଼ାଇ ବଢ଼ିଆଲାଗି ।
ବଡ଼ ଅବକାଶ ବେଳ ବଡ଼ ଗହଳ ଉହ୍ଲଳ ଆହା ଜନ୍ମେ ଜନ୍ମେ
ଥାଉ ସେ ସୁଖ ଲାଗି । ବିବିଧ ପ୍ରକାରେ ସଙ୍ଗୀତ । ବାଦ୍ୟମାନ ମିଶି
ହେଉଥାଇ ବହୁତ । ୩୭ । ତାଳ ମୃଦଙ୍ଗ ବଂଶୀ ବୀଣା ରବା
ଯନ୍ତ୍ର ମିଶି ମଧୁର ସୁସ୍ୱର ଲୋଭି ମୋହେ ମନକୁ । ଷୋଡ଼ଶ ବନ୍ଧ
ପ୍ରବନ୍ଧ ରାଗାଳାପ ଆଦି ଛନ୍ଦ ଗୀତରେ ମତାଇ ଶ୍ରୀ ବିଭେ ଲକ୍ଷ୍ମୀମାନଙ୍କୁ ।

---

୧ ପାଳକ । ୨ ସର୍ପରାଜ ବାସୁକୀ । ୩ ଜଗନ୍ନାଥଦେବ । ୪ ବଢ଼ାଇ ।
୫ ଲକ୍ଷ୍ମୀ । ୬ ଈଶ୍ୱରଙ୍କ ଅଂଶ ବିଶେଷ ।

Digitized by srujan ka@gmail.com

କେତେରୂପେ କେ କରେ ଗାନ । ଏକମନେ ଯାବଯାନେ ଜଗ-
ମୋହନ । ୩୮ । ରସିକନାଗରବର ରମାକାନ୍ତ ମୋତିହାର ଅମୂଲ୍ୟ
ଅମୂଲ୍ୟ ମାଣିକଶାନପ୍ରକାଶ । ଅମର କୁମୁଦ ଚନ୍ଦ୍ର ଅଛ ୨ ଜଗ
ମୁଣ୍ଡ-ଛନ୍ଦ ୩ ସମସ୍ତ ଲୋକ ଆନନ୍ଦ ସୁଖଦାୟକ । ସବୁଠାରେ
ସମାନ ଗୃହିଣୀ । ଏମନ୍ତ ହୋଇ ଲୋକଙ୍କୁ ନ ଥିବ ଯାହା । ୩୯ । ଏମନ୍ତ
ଯେ ପ୍ରଭୁଙ୍କ ସେହି ଅନନ୍ତେ ପୁଣ ଭକ୍ତବତ୍ସଲ ଅନୁରୂପେ ଦିଅନ୍ତି
ହରି । ଯେମନ୍ତ ନୋହୁ ଆକୃତି ଗୃହ ଭାବରେ ସେହିମତ ଗ୍ରାହ ବଶ
ଅସ୍ମାବନ୍ଧୁ ଅଛନ୍ତି ହୁରି । ଅନ୍ୟେ ଜନେ ସମସ୍ତ ତେଜ । ଦୀନକୃଷ୍ଣ
ବୋଲେ ସେହି ପ୍ରଭୁଙ୍କୁ ଭଜ । ୪୦ ।



## ଚତୁର୍ଥ ଛନ୍ଦ ।

### ରାଗ କଲ୍ୟାଣ, ପଡ଼ି ତାଳ ।

ଏଥି ଅନନ୍ତରେ ଶୁଣ ସାଧୁଜନେ । ଆନନ୍ଦମନ ହୋଇ ଏକଚିତ୍ତେ ।
ଉଲାଟି ହୋଇ ସନ୍ନ୍ୟାସୀ ବେଶ । ବଡ଼ଦାଣ୍ଡ ଦ୍ୱାରେ ବସେ ଜଗଦୀଶ ।
ବହନ୍ତି ବାସେ କର୍ପୂର ଉଶ୍ଣ ୧ । ବହନ୍ତି ଲାଗ ହୁଅନ୍ତି ଯେ କାଳ ।।
ତଥି ସଭାରେ ଚତୁସମଙ୍ଗ ଲାଗି । ଗୃହଙ୍କୁ ଯେ ଥାନ୍ତି ଲୋକଙ୍କ ତାହା
ଲାଗି । ଏଭାବରେ ହେଉଥାଇ ଯେଉଁ ସୁଖ । ମନେ ଜାଣଇ ଜାଣେ
ପଦ୍ମମୁଖ । ଭୂତଳରେ ପଟଣ କେ ସ୍ୱର । ପଞ୍ଚଦ୍ୱାରରେ ଝଲାପଡନ୍ତି
କରି । ୧ । ଅନେକ ଫୁଲ ଅନେକ ପ୍ରକାରରେ । ଆଣି ଯେ ଥାଇ
ଅନେକ ଯତନରେ । ଅନେକ ପ୍ରକାରେ ତାଙ୍କ ଖୁଣ୍ଟନା । ୫ ଯେନ

---

୧ ହାଟମଧ୍ୟ ମଣି । ୨ ଶାନ୍ତ । ୩ ଗର୍ଣିଦ । ୪ ବେଶ ଉଦାରତା ।
୫ ଲଗାଇ । ୬ ଗିଉଦ୍ୟମ । ୭ ତ୍ୟାଗ ।

Digitized by srujan ka@gmail.com

ଶ୍ରୀଅଙ୍ଗେ ଲାଗନ୍ତି ସିନା । ଅହା ସେ ଧନ୍ୟ କର୍ପୂର ଯାଇ । ଅଧର ଛୁଇଲେ ତ ଭାଗ୍ୟରୁ ଥାଇ । ୩ । କେ ରହେ ଶିରେ କେ ରହେ ହୃଦରେ । କେ ରହେ ଲଲାଟପଟ୍ଟତଟରେ । କେ ଯାଇ ଲାଗେ ଅଭୟଚରଣେ । କେ ରହେ କରେ ସୁବାସନା ଗୁଣେ । କାହିଁକି ତପ କଲେ ସୁମନେ । କୈବଲ୍ୟଦାୟୀ୧ ସେବନ୍ତି ସୁମନେ । ୪ । ଏକେ ଛଇଳ ଫୁଲବନାଦିଅ । ଫୁଲବେଶରେ ପୂରୁ ଥାଇ ହିଅ । ଫୁଲଭୂଷାରେ ଲୋଭ ନେତ୍ର-ଭ୍ରମର । ଯାଇଁ ଲୋଭେ ଚୁମ୍ବି ନୁହେ ଅନ୍ତର । ଫୁଲରେ ଅଟି ବଡ଼ ସରାଗ । ନାନାରୂପେ ଫୁଲ କରନ୍ତି ଭୋଗ । ୫ । ଗର୍ଭକ୨ ଅଧି ବେଷ୍ଟିତ ଲମ୍ବିତ । ଚୂଳମାଳରେ ସ୍କନ୍ଧଛେ ତ୍ରିଦିତ । ଫୁଲରେ ଗୃହବନ୍ଧ ଆଭରଣ । ଅବନ୍ଧ୩ ବନ୍ଧ୪ ଆଗ୍ରେପଣ୫ ଦ୍ରୋଣ୬ । ଫୁଲର ଭାବ ଜାଣନ୍ତି ସେହୁ । ଫୁଲ କେ ଏତେ ପଡ଼ୁ ସନ୍ଥୁ ବନ୍ଧି । ୬ । ଫୁଲ କୁଣ୍ଡଳ ଫୁଲର ମୁକୁଟ । ଫୁଲ ଅଙ୍ଗଦ୭ କଙ୍କଣ ପ୍ରକୋଷ୍ଠ । ଫୁଲ [illegible] ପଦକ ଶୋଭେ । ଫୁଲେ ଅଳଙ୍କାର ଜଗତ ମୋହେ । ଫୁଲକୁ ତୁଲ ନୁହନ୍ତି କେହି । ଫୁଲାରବନ୍ଦ୮ ନେତ୍ରେ ଛନ୍ତି ବନ୍ଧି । ୭ । ଫୁଲଛତ୍ର ଫୁଲପଙ୍ଖା ଚାମର । ଫୁଲଗୃହ ଆ ଆଲଟ ଫୁଲର । ଫୁଲ ବଚରଣ ହୁଏ ଶେଯରେ । ଫୁଲ ବୃଷ୍ଟି ଦେବେ କୈଳନ୍ତି ଶିରେ । ଯେଉଁବା କେତେ କହିବ ତାହା । ସଦା ସ୍ମରଇ ନୀଳଗିରିନାଥ । ୮ । ଶ୍ରୀବଳଭଦ୍ର ତେଷ ଏହି ବେଶ । ତରୁଣନନ୍ଦିନୀ୯ ବେଶେ ଅବେଶ୧୦ । ରଜତ-ପଙ୍କଜ-ଶୃଙ୍ଗ ସୁନ୍ଦର । ଘିଁମେତ ନେତ୍ର ଅତି ମନୋହର । ଶିରରେ ଫଣୀମଣି ବସନ୍ତେ । ତଥି ଉପରେ ଫୁଲଚୂଳ ଶୋଭେ । ୯ । କଟି ବାହୁଟି ହୀରା ଧେଦକ । କୁଣ୍ଡଳ ଅବି ଫୁଲରେ ଏତେକ । ଶ୍ରୀମୁଖକୁ ବେଢ଼ି ଅଳ-

---

୧ ମୁକ୍ତିଦାତା । ୨ କେଶ ବେଷ୍ଟିତ ପୁଷ୍ପମାନ । ୩ ଯୋଡ଼ା ହୋଇ ଗୁନ୍ଥା । ୪ ବନ୍ଧା ହୋଇ ଗୁନ୍ଥା । ୫ ଛଡ଼ାଇବା । ୬ ଦ୍ରୋଣାକାର ମାଲ । ୭ ବାଙ୍କ । ୮ ପ୍ରସ୍ଫୁଟିତ ପଦ୍ମ । ୯ ଲକ୍ଷ୍ମୀ । ୧୦ ମନୋଯୋଗ ।

Digitized by srujan ka@gmail.com

କାମନ୍ତ । ଅତି ସୁନ୍ଦରି ସୁନ୍ଦର ଦିଶନ୍ତ । ଅହୋ ସେ ଶୋଭା ଅତି
ଅଲକ୍ଷ୍ୟ । କେ ଅଛି ତାହାକୁ କରିବ ଲକ୍ଷ୍ୟ । ୧୦ । ବଜାଏ ହାରୁ
ମୁଅଙ୍ଗେ ଗୋବନ୍ଦ । ନୃତ୍ୟ କରନ୍ତି ଅପସରାବୃନ୍ଦ । ତାଳ ମର୍ଦ୍ଦଳ
ଯନ୍ତ୍ର ରବାବ ଧର । ସୁସ୍ୱରେ ଗୀତ ଗାଉନ୍ତି ସୁନ୍ଦରୀ । ନାଗରୀ ଅଭିନବ-
ବୟସୀ । ନାଗର-ମନ-ମୀନକୁ ବଡ଼ିଶୀ । ୧୧ । ଏମନ୍ତେ ବେନି
ଭୁରୁ ବେଙ୍କ ହୋଇ । ଶ୍ରୀକର୍ପୂର ଚୂର ଅଧରେ ଦେଇ । ଅଳପ ହସ
ମନ୍ଦମନ୍ଦ ହୋଇ ଅମୃତଦୃଷ୍ଟି ଲୋକଙ୍କୁ ପକାଇ । ବଚସ୍ପ ଉର୍ଦ୍ଧ-
ଧି ହାସଜନକେ । ଲୋକେ ପଟେଶଅର ଉପ୍ନେ ସମ୍ଭେରୈ[1] । ୧୨ । ନୃତ୍ୟ
ଗୀତରେ ଅତି କୁଶଳତା । ତାଳମାନ ଗ୍ରାମ[2] ମାନଙ୍କେ ଜିତା ।
ଗନ୍ଧର୍ବସୁତ୍ୱ ହେ ସମସ୍ତେ ତନ୍ଦି । ଗନ୍ଧର୍ବୀଙ୍କୁ ହେଲେ ପାରନ୍ତି ମୋହି ।
ସୁନ୍ଦରୀ ଜଗତ୍ ସୁମୋହିନୀ । ଜଗମୋହନ ଅନୁଗ୍ରହ ଘେନି । ୧୩ ।
ନ ଉଚ୍ଚା ନ ଖର୍ବା ପ୍ରମିତଦୃଷ୍ଟା । ନ ସ୍ଥୂଳା ନ କୃଶା ଅପୂର୍ବାଳମ୍ବା ।
ଉତ୍କଳୁଟଭରେ ସମସ୍ତେ ସ୍ତନ୍ଙ୍କ । ନିତମ୍ବବତୀ ଅତି ମନୋହାରୀ ।
ସୁନେତ୍ରା ଚାରୁ ପଦ୍ମଦଳାକ୍ଷୀ[3] । ସର୍ବାଙ୍ଗ ସୁଭଗା[4] ବକ୍ରକଟାକ୍ଷୀ । ୧୪ ।
ସୁକେଶୀ ସୁବେଶୀ କେ ମଦାଳସୀ[5] । କେ କନ୍ଦର୍ପକେଳିକଳା
ଲାଳସୀ । ମତ୍ତପିକଭାଷୀ କେ ମନ୍ଦହାସୀ । କେ ସୁଖଗର୍ବ ମନ-
ମୋହପାଶୀ । ତାହାଙ୍କୁ ଦେଖି ନ ଟଳେ ଯାହାର କେ ଗୃହିଲେ
କାମ କରେ ପ୍ରମାଦ । ୧୫ । ଏକେତ ପ୍ରମଦା[6] ମଦନେ ମତ୍ତା । ମୋହି
ପାରନ୍ତି ମହା ଉର୍ଦ୍ଧ୍ୱରେତାଙ୍କୁ[7] । ବକ୍ଷ ଉପ ଉହି ନାଶା ଫୁଲାଇ ।
ହେଲେ ମନକୁ ନିଅନ୍ତି ମୁଲାଇ । ମୋହିନୀ ନାଗ୍ନାହଳାସ[8] ବଶେ ।
ମୋହନ୍ତି ମନକୁ ବବଧ ରସେ । ୧୬ । କେ ହସିଣ ବଶ କରଇ
ମନ । କେ ସୁଖ ଦିଅଇ କହି ବଚନ । କେ ନୟନକୋଣେ
ଚାହିଁଲେ କ୍ଷଣେ । ବନାଇ ପକାଏ ମଦନବାଣେ । କାହାର ଭ୍ରୂଭଙ୍ଗିମା

---

୧ ଧମ୍ବୁମରେ । ୨ ସ୍ୱରର ଅଂଶ ବିଶେଷ । ୩ ପଦ୍ମପତ୍ରନେତ୍ରା ।
୪ ସର୍ବାଙ୍ଗ ସୁନ୍ଦରୀ । ୫ ମଦବିହ୍ୱଳା । ୬ ସୁନ୍ଦରୀ । ୭ ମହାଯୋଗୀ ।
୮ ଅଙ୍ଗଭଙ୍ଗୀ ।

Digitized by srujan ka@gmail.com

ଗୃହୁଣୀ । ଦମ୍ଭ ବଧନକୁ ଶାଣକରୁଣୀ । ୧୬ । କେ ବେଣୀ ତକ୍ଷ
କେ ଲୋଟଣୀ ଜୁଡ଼ା । ଗନ୍ଧାରେ ଗନ୍ଧ୧ ପ୍ରତିଘରବୁଡ଼ା । କାଳନ୍ଦୀ-
କୂଳେ ହଂଧପନ୍ତି ପ୍ରାୟେ । ମୋତିଦନ୍ତୀ ଶିର ଶୋଭାକୁ ପାଏ । ଝଲକେ
ଝିକିମିକି ଅଳକା୨ । ଝଟତି ଲଗାଇ କାମଚେଳକା । ୧୮ । ଗଣ୍ଡ
ମଣିମୁକୁର କର୍ଣ୍ଣ ଦର୍ପଣ । ନ କରେ କାହା ମନକୁ ତୂପଣ୩ । ଫୁଲ
ଭ୍ରମରୀ ଝଲକା ଝଲକା । ଚମ୍ପାକଳି ଅଙ୍ଗୁଳରେ ମୁଦ୍ରିକା । ନାସାରେ
ମୋତି ମଣି ବସଣୀ । ନେତ୍ର ପଡ଼ିଲେ ମନ ନୋହେ ଆଣି । ୧୯ ।
କମ୍ବୁକଣ୍ଠେ୪ କଣ୍ଠଭୂଷଣ ଶୋଭେ । କରେ କଙ୍କଣ ଚୂଡ଼ି ତାଡ଼ ବାହେ ।
ଝଟକ୍ତ ତିଳକ ଭାଲେ ବିରାଜେ । ବାଧୂଲୀ ଅଧରେ ତାମ୍ବୁଳ ସାଜେ ।
ଖଞ୍ଜନ ନୟନରେ ଅଞ୍ଜନ । ରଞ୍ଜିକେ କରେ ନୟନ ରଞ୍ଜନ । ୨୦ ।
ଗତିରୁ ଧୀଗଜ ବଳା କାହାର । ଧନୁରେ ଜଗାଇ୫ କୁସୁମଶର ।
ରଣରଣଙ୍କ୬ ରଣାଙ୍ଗଣ ପ୍ରାୟେ । ଝଟକ ଦିଶଇ ସବୁରି କାୟେ ।
ଝଙ୍କୋଟି କେତେ କହିବ ତାହା । ବୃଦ୍ଧେକ ନ ରହେ ଗୃହେ ହୁଲ
ଯାହା । ୨୧ । ଏକେତ ପ୍ରସ ଜଗମୋହନପୁର୭ । ଯହିଁ ପୂର୍ଣ୍ଣ ଜଗ-
ମୋହନ ପୁର୮ । ଏଥେତ କରନ୍ତି ଜଗମୋହନ୯ । ଆଉ
କଥା ତାଙ୍କୁ କେତେ ଗହନ । କାହାର ତାରତର ତରଳ୧୦ । କରେ
ଇଷିତ ମାତ୍ରକେ ହୁତଳ୧୧ । ୨୨ । କେ ହାବଭାବ୧୨ ଅନୁରବ ରସେ ।
ଧନେକ ସୁଖ ଅମୃତ ବରଷେ । ନାନାରଙ୍ଗେ ଫୁଲ ସୁବର୍ଣ୍ଣଲତା ।
ଚଳନ୍ତି ପ୍ରାୟେ ଦିଶନ୍ତି ବନତା । କେ ମୁଗ୍ଧା୧୩ ମଧ୍ୟା୧୪ ପ୍ରଗଲ୍‌ଭା୧୫
ତହିଁ । କଳାକଳାପକୁ୧୬ ଅନ୍ତ ନାହିଁ । ୨୩ । କାହାକୁ ଚତୁରଦଶ

---

୧ କେଶ ଗୁଚ୍ଛରେ ଫୁଲଗଭା । ୨ ଝିକିମିକି ମାଳୀ ଅଲଙ୍କାର ଯୁକ୍ତ କୁଟିଳ କେଶ । ୩ ତୋଷଣ । ୪ ଶଙ୍ଖ ସଦୃଶ କଣ୍ଠଦେଶରେ । ୫ ଜାଗ୍ରତ କରାଏ । ୬ କନ୍ଦର୍ପଙ୍କ । ୭ ଜଗନ୍ନାଥଙ୍କ ମନ୍ଦିର । ୮ ଜଗନ୍ନାଥଙ୍କ ସମ୍ମୁଖ । ୯ ଜଗତଜନ୍ମଙ୍କୁ ମୋହିତ । ୧୦ ଉଜ୍ଜ୍ୱଳ ତାରାହାର । ୧୧ ଦ୍ରବୀଭୂତ । ୧୨ ସ୍ତ୍ରୀମାନଙ୍କର ଚିତ୍ତବିଶେଷ । ୧୩ ମଧୁରବୟସ୍କା । ୧୪ ମଧ୍ୟବୟସ୍କା । ୧୫ ପ୍ରବୀଣା । ୧୬ ନୃତ୍ୟଗୀତାଦିଜ୍ଞାନ ସମ୍ବନ୍ଧକୁ ।

Digitized by srujan ka@gmail.com

ବଟଷ । କାହାକୁ ଶୋଭ ନେ ଷୋଳ ମାରସ । କେ ପକ୍ଷି ଘରର ଭିତରେ ରହି । ତାହା ଅତା କେତେ ବସିବ କହ । ଏମନ୍ତେ ଗମା ନୃତ୍ୟ କରନ୍ତି । ଜଗନ୍ନାଥ ମନକୁ ହରନ୍ତି ।୨୪। ଏବେଶ ତାଙ୍କର ମଞ୍ଜିଷ୍ଠା ଗରେ ।୧ ଚନ୍ଦ୍ରକାନ୍ତ ଚନ୍ଦ୍ର ହୁଅଇ ବେଗ । କୁସୁମ ଗଗ୨ କେତେ କେତେ ବୋଲେ । ରଙ୍ଗେ ସମସ୍ତ ଗଗ ବସୁଥିଲେ । ଅଙ୍ଗରେ ନାନାରଙ୍ଗ କରନ୍ତି । ଅଙ୍ଗେ ଅନଙ୍ଗରଣ ଜୁଗନ୍ତି ।୨୫। ନୃତ୍ୟ ବଢ଼ାଇ ସମସ୍ତେ ଚଳେ । ହସ ରସରେ ନାନାକୌତୁହଳେ । ରଣ-ରଣଙ୍କ ରଣରଥ ପନ୍ତି୩ । ପ୍ରାୟେ ରସଭୂମି୪ ଗୃହକୁ ମିଳନ୍ତି । ଏମନ୍ତେ ଚଳେ ଚତୁର୍ଦ୍ଦିଗ । ଲୋକେ ଭିତରୁ ହୁଅନ୍ତି ବାହାର ।୨୬। ଘଣ୍ଟେ ଘଣ୍ଟେ ଦୂରରେ ଯାଇ ରହନ୍ତି । ମହାସୁଆରେ ଭୋଗ ବହନ୍ତି । ମଣୋହି କରନ୍ତି ଦେବାଧିନାଥେ । ବଲ୍ଲଭ ଭୋଗ ସେହି ଲାଗେ ହୁଏ । ଅହା ସେ ବଦାପନା ବଧାନ । ସମସ୍ତଲୋକର ଗତି ନିଧାନ୫ ।୨୭। ଆଚମନ ଶେଷେ ବଢ଼ି ଆଳତି । ହୁଅନ୍ତି ପ୍ରଭୁ ମହାସୁଖଗ୍ରୀ । ଏହି ସମୟରେ ପୁରାଣ ଶୁଣି । ଦେବତାମାନଙ୍କୁ ହୁଏ ମେଲାଣି । ନଦ୍ୱାରେ ଅତି ଅବେଶ୬ ହୋଇ । ପଲ୍ଲଙ୍କ ଦିବ୍ୟ ପଲ୍ୟଙ୍କେ ଯାଇ ।୨୮। ପାଳିସେବକେ ରହନ୍ତି ସେବାରେ । ଦଣ୍ଡ ଅସୀ ଲୋକ ସଞ୍ଚା ହାରେ । ଏଥିଅନ୍ତରେ ପଡ଼ଇ କବାଟ । ଏମନ୍ତେ ଜଗନ୍ନାଥ ଦେବରାଟ । ନିତି ନିତି ପ୍ରତିପାଳନ୍ତି । ସ୍ଥାପକ ବୃତ୍ତିରେ୭ କାର୍ଯ୍ୟ କରନ୍ତି ।୨୯। ରଜନୀ ଶେଷେ ପୁଣି ସେହିମତି । ଏମନ୍ତ ହୋଇ ଦେବରାଜ ନୀତି । ଏହା ଯେଉଁମାନେ ଧ୍ୟାବନ୍ତି ନିତି । ତାହାଙ୍କ ଲାଗି ଧର୍ମରାଜ ଭୀତି୮ । ଶୁଣ ହେ ସାଧୁ ବବେକବର । ଏ ପ୍ରଭୁଙ୍କୁ ଭଜି ସଂସାରୁ ତର ।୩୦। ବୋଲନ୍ତି ଅବା ଦୀନକୃଷ୍ଣ ବାଣୀ । ତାହା କେମନ୍ତେ ଯିବୁଁ ଅମ୍ଭେ

---

୧ମଞ୍ଜିଷ୍ଠା । ପର ଯେଉଁ ସେହି ଅଙ୍ଗକୁ ଦିନ ରଙ୍ଗେ । ୨କୁସୁମଫୁଲ ପର ଯେଉଁ ସେହି ଭଞ୍ଜନ କରୁଅଛନ୍ତି ଥାଏ । ୩କାମର ଯୁଦ୍ଧରଥ ଶ୍ରେଣୀ ପର । ୪ସ୍ଥଳଣି । ୫ମୂଳ୍ୟଧାମ । ୬ଅସକ୍ତ । ୭ମାଳୀର ମାଳ-ରେ ଫୁଲ ଥିଲା ପର ଭ୍ରମିତ ହୋଇ । ୮ଯମଭୟ ।

Digitized by srujan ka@gmail.com

ଶୁଣି । କଥା ମଧ୍ୟେ ଦୋଷ ଥିଲେ ନିର୍ଦ୍ଦୋଷ । କଳଙ୍କ ଥିଲେ ଚନ୍ଦ୍ରମା ପୀୟୂଷ । ଖଣ୍ଡକେ ଦେଖ ଚନ୍ଦନ ପିତା । ଭାଷନାଗର ଯେଣୁ ନ ଚେତନତା । ୩୧ । ଅତି ଯାତୁକ ହୋଇଲେହେଁ ପଣ୍ଡିତ । ଗ୍ରହଣ ନକର ନ କର ତା ମତ । କୋକିଳ କଳା ହୋଇଲେ ତାର ବାଣୀ । ମଧୁର ସ୍ୱରରୁ ଅବଶ୍ୟ ଶୁଣି । ଖାମ୍ବୁ ଜାତ ହେଲେ ମୁକୁତା । ମଣ୍ଡନ ନ କଲେ କେଉଁ ଲୋକ ତା । ୩୨ । ଏଣୁ ଯେଣ ଏ ଜଗମୋହନ ଗୀତ । ଅବଗତ ଲୋକଙ୍କର ହିତ । ଶ୍ରବଣେ ଶୁଣି ମନେ ଏହା ଭାବ । ଅଟେ ପାଇବ ବଇକୁଣ୍ଠ ଠାବ । ତୁମ୍ଭେମାନେ ସର୍ବ ପ୍ରକାରେ ଧୀର । ଅସାର କଥା କର ଦୂର ସାର । ୩୩ । ମେଘ ଯେସନ ଲବଣ-ଅମ୍ବୁ ତ । ଗ୍ରହଣେ କରଇ ଅମୃତ ମତ । ସେହିରୂପେ ସାଧୁଜନଙ୍କ ଚିତ୍ତ । ତାହାଙ୍କୁ ମୋର କୋଟି ଦଣ୍ଡବତ । ଏବେହେଁ ବନ୍ଦୁଅଛି ଖଳଙ୍କୁ । ନ ଯିବେ କେବେ ହେଁ ନିନ୍ଦା ଗୋଳକୁ । ୩୪ । ତୁମ୍ଭ ବଚନ ଯେ ନଉକା ପ୍ରାୟେ । ହେଳାରେ ତ୍ରୈଲୋକ୍ୟ ପ୍ରତିକୂଳ ପାଏ । ପକ୍ଷି ଅପୂର୍ବ ଶରଙ୍କୁ ତଜଇ୪ । ଗୁଣବନ୍ତ୫ ନୋହି ମର୍ମେ ବାଜଇ । ଜୀବନେ ଥିଲେ ନ ଶୁଖେ ବ୍ରଣ । ଦୁଃଖ ଦେବାରେ ସେ ଅଟନ୍ତି ନିପୁଣ । ୩୫ । ଦୀନକୃଷ୍ଣ ବୋଲେ ସଂସାର ଚେତ । ସାଧୁହୃଦ ହୋଇ ସାଧୁଙ୍କୁ ଭଜ । ଜଗନ୍ନାଥ ଦେବରାଜଙ୍କ କଥା । ଶ୍ରବଣେ ଶୁଣି ଖଣ୍ଡ ଭବବ୍ୟଥା । ଏ ଦେହ ଇନ୍ଦ୍ରଜାଲ ସମାନ । ଦଣ୍ଡିକେ ହୋଇଯିବ ଅନ୍ତର୍ଧାନ । ୩୬ । ଚକ୍ରକାର ଚକ୍ରପଟ ପରାୟେ । ହୋଇଅଛି ଏ ଷଣଭଙ୍ଗ କାୟେ । ପାଣିଫୋଟକା ପ୍ରାୟେ ଫାଟିଯିବ । ଭସ୍ମ କୃମି ବିଷ୍ଠା ଭିନ୍ନ ଏ ହେବ । ଅନେକ ମତେ ଏହା ବଦନ୍ତି । ଏଥିକି ଏକା ଜଗନ୍ନାଥ ଗତି । ୩୭ । ଦେଖ ଦୁସ୍ତର ସଂସାରସାଗର । ଏହା ତରିବାକୁ ଉପାୟ କର । ନାମବୋଇତ ବେଗେ କର ଆନ । କର୍ଣ୍ଣଧାର ହୋଏ ଦେବର୍ଷି-ରାଜ । ଭକତିଭାବେ ସୁବାତାସ ତହିଁ । ସୁଖେ ତରିବ କହୁଅଛି ଭାଇ .

---

୧ସର୍ପ । ୨ଲୁଣିଆଜଳ । ୩ବୃକ୍ଷ, ଉପରୀତ କୂଳ । ୪ଆଶ୍ଚର୍ଯ୍ୟ ଶରର ଗୁଣକୁ ଧରଇ । ୫ଗୁଣରେ ଯୁକ୍ତ ନୋହି । ୬ଅନୁକୂଳ ପବନ ।

Digitized by srujan ka@gmail.com

ନାହିଁ । ୩୮ । ଦୀନକୃଷ୍ଣ ବୋଲେ ନ କର ହେଳା । ସ୍ୱଭାବ ଥାଅ ଶ୍ୱେତପଙ୍କଜଙ୍ଗଜାଳା । ସର୍ବଠାରେ ସମହୃଦୟ ହୁଅ । ସନ୍ତୋଷ ଦୀନଜନେ ଦାନ ଦିଅ । କୋମଳ ପ୍ରିୟବଚନ କହି । ଜୀବରେ ମାତ୍ର ଥିବ ଦୟା ବହି । ୩୯ ।

---

## ଚତୁର୍ଥ ସ୍କନ୍ଦ । ସ୍ୱର୍ଗ ବର୍ଣ୍ଣନ ।

ଏବେ ଶୁଣ ସାଧୁଜନେ ଜଗନ୍ନାଥ ଦେବ ନୃପତିଙ୍କ ଚରିତ । ଅଶେଷ କୋଟି ବ୍ରହ୍ମାଣ୍ଡରେ ଯାହାର ଯଶ ଅନେକ ରୂପେ ଖ୍ୟାତ । ବ୍ରହ୍ମଲୋକରେ । ବ୍ରହ୍ମ ସୁନ୍ଦର ନିକେତନ[୧] । ଉପରେ ହୋଇଛି ଚନ୍ଦ୍ର ବିମଳ ବ୍ରହ୍ମଜାତି ହୀରକେତନ[୨] । ୧ । ଇନ୍ଦ୍ର ଅମରାବତୀରେ[୩] ଅପସରାମାନଙ୍କ ହୃଦ ଭାର[୪] ହାର । ଅଳକାପତି ଅଳକାପୁରଦ୍ୱାରେ ମୁକ୍ତା ତୋରଣୀ ପ୍ରକାରେ ଶ୍ରୀକୃଷ୍ଣମୁଦ୍ରେ । ଫେନ ଉପରେ ପରକାଶ । ବନଜୀବନେ ପ୍ରଫୁଲ୍ଲିତ ଫୁଲ[୫] ବଜ ସୁନ୍ଦରୀ ମୁଖେ ହାସ । ୨ । ଏମନ୍ତ କର କେତେହେଁ କହିବ ସେ ଯଶ କଦମ୍ବ[୬] ପରକାଶ । କହିଲେ ଯାହା ସହସ୍ର ମୁଖେ ଶେଷ[୭] ଲେଶହେଁ ନ କହିବେ ଶେଷ । ଭର୍ଗ[୮] ବିରଞ୍ଚି[୯] । ଇନ୍ଦ୍ର ଚନ୍ଦ୍ର ରବି ବରୁଣ । ଯାହା କରୁଣ୍ୟାକଟାକ୍ଷ ମହିମାରୁ ଏମାନଙ୍କର ବଡ଼ପଣ । ୩ । ନାଗ ନର ସୁରଲୋକ ମଧ୍ୟେ କେହି ସମାନ ନାହାନ୍ତି ତାହାଙ୍କ । ରୂପ ଗୁଣେ ପରାକ୍ରମେ ହରିପମଛ କର ଲକ୍ଷିବା କାହାକୁ । ଯେଉଁ ପ୍ରଭୁଙ୍କ ୀ ଚରଣ ରୂପ ଗୁଣ କୀର୍ତ୍ତି । କହୁ ବସିଲେ ଗଣେଶ ଆଦି ସରସ୍ୱତୀହିଁ ରହିବେ ନିବର୍ତ୍ତି ॥ କବିତା ବଚନେ କେତେ କହିବି । ତା କହିଲେ ନିଜ ଦୋଷ ସରବ ।

---

୧ ବ୍ରହ୍ମାଙ୍କର ସୁନ୍ଦର ଗୃହ । ୨ ହୀରାଖଚିତ ପତାକା ପରେ ଜଗନ୍ନାଥ ଦେବଙ୍କ ଯଶ ପ୍ରକାଶିତ ହୋଇଛି । ୩ ଇନ୍ଦ୍ର ନଗରୀ । ୪ ଉତ୍କୃଷ୍ଟ । ୫ ଫୁଟିଥିବା ଶୁକ୍ଳବର୍ଣ୍ଣ ଫୁଲ । ୬ ସମୂହ । ୭ ସହସ୍ରମୁଖ ସର୍ପରାଜ । ୮ ଶିବ ୯ ବ୍ରହ୍ମା ।

Digitized by srujan ka@gmail.com

କେବଳ କୃତାର୍ଥ ହୋଇବା ନିମନ୍ତେ ମନରେ ଭାବନା କରିବ । କାମଦେବ ରୂପ । ଯେଉଁ ଚରଣ ମୀନଚିହ୍ନିତ୧ । କମଳା୨ କୋମଳ କରକମଳରେ କରନ୍ତି ଆଲିଙ୍ଗନ ପଦାନ୍ତ । ୫ । ଅର୍ଦ୍ଧଚନ୍ଦ୍ର ଧର ଭାବରୁ ଶଙ୍କର ଚରଣେ ମଧ୍ୟବର୍ତ୍ତି ଦାତା । ମହାଭୂତି୩ ଗଣମାନଙ୍କ ଶରଣ ମଦ ନାଶକେ୪ ସ୍ୱଶୋଭା । ଦିବ୍ୟ ଅଙ୍କୁଶ । ଥିବାରୁ ସଦ୍ଭକ୍ତ ଗଣେଶ । ବଜ୍ର୫ ଥିବାରୁ ଦେହରେ ବାସବ୬ ବନ୍ଦେ ସମସ୍ତ ସମନ୍ୱୟ । ୬ । ତଥି ତେଜମାନଙ୍କୁ ଚାତୁର୍ଯ୍ୟ ସେବା କଲେ ସୁଖ ଦିଅନ୍ତି । ଅଙ୍ଗ ପଦ ଶୋଭନଙ୍କୁ ସେ ଶାର୍ଙ୍ଗ ପଦ୍ମନାଥ ପ୍ରାପ୍ତେ ଦିଶନ୍ତି । ଧ୍ୱଜା୮ କଳଶ । ଅମୃତେ୯ ସିନ୍ଧୁ ଶୋଭନ । ଏହି ଯେନ ମନେ ମଣି ହେ ସୁଜନେ ମନୋରଥ ଯାନ ଶୋଭନ । ୭ । ଧନୁ ଧରିବାରୁ ମହାଶକ୍ତି ସେ ଅଭୟ କରି ଉପାର୍ଜନ । ଗୋଷ୍ପଦ୧୦ ପଦରୁ ପଞ୍ଚଭେଦ୍ୱୟ ସୁରଭି୧୧ ମାନଙ୍କର ସ୍ଥାନ । ଊର୍ଦ୍ଧ୍ୱ ରେଖାରୁ । ଲେଖା ସେ ମହାପୁରୁଷରେ । ଯେଉଁ ତ୍ରିକୋଣ ତ୍ରିମୂର୍ତ୍ତି୧୨ ଅଷ୍ଟକୋଣ ବନ୍ଦ ବସୁଙ୍କ ଏ ଭାବରେ । ୮ । ମୁନି ମାନସ ମାନସରେ୧୩ ବିକାଶମାନ ହଂସ ସେ ନିରନ୍ତରେ । କେ କହିବ ସେ ପାଦପଦ୍ମ ମହିମା ମାନବ ହୋଇ ବଚନରେ । ଏବୁ ପ୍ରକାରେ । ସର୍ବରୂପ ସୁଖଦାୟକ । ଯାହା ଅଶେଷ ତ୍ରୈଲୋକ୍ୟ ଚିନ୍ତା କରନ୍ତି ଲୋକନାୟକ୧୪ । ୯ । ଯେଉଁ ପାଦପଦ୍ମ ସେବାକୁ କମଳା ଅଷ୍ଟଐଶ୍ୱର୍ଯ୍ୟକାରିଣୀ । ଭକ୍ତଜନ ଭବସିନ୍ଧୁ ତରିବାକୁ ଯେଉଁ ପାଦପଦ୍ମ ତରଣୀ । ଯେଉଁ ଚରଣ । ଅଶରଣ ଲୋକ ଶରଣ । ଯାହା ଚିନ୍ତନରୁ ଜନ୍ମର ମୁଖରୁ ମୋକ୍ଷ ହୋଇ ତରଙ୍ଗିଣୀ୧୫ । ୧୦ । ଯେଉଁ ପାଦପଦ୍ମ ପ୍ରସାଦରୁ ପୂର୍ବେ ପାଷାଣ ହୋଇଲା ଅବଳା । ଯେଉଁ ପାଦପଦ୍ମ ମହିମାରୁ ଧ୍ରୁବ ଧ୍ରୁବଲୋକରେ

---

୧ ମୀନଚିହ୍ନିତ ପତାକା । ୨ ଲକ୍ଷ୍ମୀ ଏବଂ ଅତ୍ୟୁତ୍ତମା ସ୍ତ୍ରୀ ଜାତି । ୩ ବିଭୂତି ଐଶ୍ୱର୍ଯ୍ୟ । ୪ ନାଶିବାରେ । ୫ ବଜ୍ରଚିହ୍ନ ଏବଂ ହୀରକ । ୬ ଇନ୍ଦ୍ର । ୭ ଦେବତା । ୮ ପତାକା । ୯ ଚନ୍ଦ୍ରମା । ୧୦ ଗୋଖୁରବନ୍ଧା । ୧୧ ଗାଭୀ । ୧୨ ପ୍ରାସାଦ । ୧୩ ମୁନିମାନ ମାନସସରୋବରରେ । ୧୪ ବ୍ରହ୍ମା ୧୫ ତରଙ୍ଗିଣୀ ।

Digitized by srujan ka@gmail.com

କଲ୍ପ ଲୀଳା । ଯେଉଁ ଦିଅର । ଜଗତେ ସତ ନରପତି । ଶୁଚ୍ଛ କରୁ
ମଣ ସଚ୍ଛ କରି ଦେଲେ ମହାସୁଖ ଗାଁଙ୍ଗସମ୍ପତ୍ତି । ୧୧ । ଯେଉଁ ପାଦ
ପଦ୍ମ ଚିନ୍ତା କରି ହୃଦେ ପ୍ରହ୍ଲାଦ କଷ୍ଟୁଁ ତରିଲେ । ଧାରଣାତଳପୃଷ୍ଠ-
ରେ ମଣ୍ଡି ହୋଇ ଅମରପୁରେ ବିହରିଲା । ଯେଉଁ ପାଦକୁ ପୂଜା
କରି ଧର୍ମନନ୍ଦନ୧ । ଯାମିନୀ ଭବେଶ୍ୱପଣରୁ ହୋଇଲେ ଅନେକ
ନୃପତିବନ୍ଦନ । ୧୨ । ଏମନ୍ତ ପ୍ରଭୁଙ୍କ ଉପମା ଦେବ ଯାହା ପାଦ-
ର ଏ ମହିମା । କେଉଁ ଅଙ୍ଗକୁ କାହା ଲକ୍ଷ୍ୟ କରିବ ଯେ ମହାସୁଖ
ଶୋଭ ସୀମା । ମହାପ୍ରଭୁ ସେ । ଜଗତଜନଙ୍କ ହିତରେ । କରନ୍ତି
ଷଷ୍ଠ ଯାତ୍ରା ଷଷ୍ଠରେ ହିମ ଆଦି ଷଡ଼ୃତୁରେ । ୧୩ । ବସ୍ତ୍ର ଓଢ଼ଣ
ଅଭିଷେକ, ମକର, ଦୋଳ, ଦମନକ, ଚନ୍ଦନ । ସ୍ନାନ, ଗୁଣ୍ଡିଚା,
ଶୟନ, ଅୟନ, ପାର୍ଶ୍ୱପରିବର୍ତ୍ତ, ଉତ୍ଥାନ । କ୍ରମେ କହିବ । ଯେଉଁ
ଋତୁରେ ଯେଉଁ ଯାତ । କେବଳ କୃତାର୍ଥ ହୋଇବା ନିମନ୍ତେ ଶୁଣିମା
ସ୍ଥିର କରି ଚିତ୍ତ ।୧୪। ଶୋଲ୍ହ ବୃତ୍ତିରେ ମୁଁ କହି ନ ପାରଇଁ ବୁଝା-
ଇଲେ ସେ ମହାବାହୁ । ଅର୍ଦ୍ଧ ମାସାନ୍ତର ମୂର୍ତ୍ତି ମାନେ ପଙ୍ଗୁ ପର୍ବତ
ଲଙ୍ଘେ ଗୃହୁଁ ଗୃହୁଁ କଲେ କୀଟକୁ । ବଜ୍ରଅଙ୍ଗ ସେହୁ କରନ୍ତି ।
ମାରିଲେ ମହାପ୍ରତାପ ବଳବନ୍ତ ଶୂର ଅସୁରଙ୍କୁ ମାରନ୍ତି ।୧୫। ଭକ୍ତ-
ସ୍ୱଭେ ଖେଳା ଶ୍ୱେତପଦ୍ମଜାଲା ବନ୍ଧନ୍ତି ହଂସନାଗର । ପୂର୍ବେ
ସଙ୍ଗରରେ୨ ଶାଖାମୃଗଙ୍କ୩ କରେ ବନ୍ଧାଇଲେ ପ୍ରଭୁ ସାଗର । ଜଗତ
ଲୋକଙ୍କୁ । ଦିବ୍ୟ ନରନ ସେ ଭୁଞ୍ଜାନ୍ତି । ଅନ୍ନକୁ ଲେଚନି ଦାନ
ଦେଇ କରି କାଲେ କାଳୀ କଥା ଭୁଞ୍ଜାନ୍ତି ।୧୬। ଏହି ଯେନି
ବଡ଼ ଭରଷା ମୋହର ନୀଳପର୍ବତଶିଖରେ । ଅତଭୟଙ୍କର
ସଂସାରଜନଙ୍କୁ ଭୟ ନ ଥାଇ ମୋ ମନରେ । ଅନ୍ତାନ୍ତେ ଲମ୍ବେ । ବର୍ତ୍ତୁଳ
ବେନି ଉର୍ଦ୍ଧ୍ୱ ବାହା । ଉର୍ଦ୍ଧ୍ୱ କରି ଗୃହୀ ଗୃହୀ ହୋଇଅଛି ହୃଦୟ
ହେଉଥାଇ ଯାହା । ୧୭ । ବଚନରେ ତାହା କେତେହେଁ କହିବ
ଅହା ସେ ଶ୍ରୀମୁଖ ଶୋଭା । କୋଟି କୋଟି ଚନ୍ଦ୍ରଉଦିଅ ଉଚ୍ଚିତା ହେଉ

---

୧ଯୁଧିଷ୍ଠିର । ୨ଯୁଦ୍ଧଯାତ୍ରାରେ । ୩ବାନର ।

Digitized by srujan ka@gmail.com

ଯେ ଥାଇ ହୁର କର । ରତ୍ନତିଳକ । ଅବୋଚି ଚନ୍ଦ୍ର ଗନ୍ଧରେଖା । ଉର୍ଦ୍ଧ୍ୱଖଦ ତୁଳ୍ଳ ଜଳ ମଣାଇ ଦେଖାଇ ଦିବ୍ୟ ମହାଶିଖା । ୧୮ । ମକର ମୁଖ ମଣିମୟ କୁଣ୍ଡଳ ଗଣ୍ଡମଣ୍ଡଳରେ ଝଲକେ । ଦର୍ଶନ ସୁଖ ଜଦମ୍ବନେ ଜଦମ୍ବଫୁଲ ପ୍ରାୟେ ଅଙ୍ଗ ପୁଲକେ । ଶ୍ରୀମୁଖ ଶୋଭା । ନୟନ ବସ୍ତ୍ରାର ଗୁନ୍ଥିବା । ଅହା ସେ ବିପୁଳ ହୃଦେ ଫୁଲମାଳ ଜନ୍ମା-ଜନ୍ମ ହୋଇ ରହିବା । ୧୯ । ମୁହିଁ ଏ ଘଟନା କରୁଥାଇ ସିନା ଗତ ଦିବସ ଜରନ୍ତରେ । ଅନ୍ତକ[1] ଅଧାନ୍ତା କରବାକୁ ଚନ୍ତା ନ ଥାଇ ମୋ ଅନ୍ତର୍ଗତରେ । ଅହେ ସୁଜନେ । ଏହି ପ୍ରଭୁଙ୍କୁ ସେବା କର । ପତଙ୍ଗ ପ୍ରାୟେ ସୁରଙ୍ଗ ଦେଖି ମାୟାଅନଳେ ପଡ଼ିଣ ନ ମର । ୨୦ । ଖଳଚଳ ମୂର୍ଖଲୋକଙ୍କୁ ଏ ସୁଖଦାୟକ ନୁହଇ କେବେହେଁ । ଚନ୍ଦ୍ର ଉଦେ ହେଲେ ଅଶ୍ମଶିଳା ଯେ କେବେହେଁ ଦ୍ରବୀଭୂତ ନୁହେ । ବୋଧ ନୁହନ୍ତି । ଜ ହେବ ତାହାଙ୍କୁ କହିଲେ । ମାନ୍ତ୍ରିମାଲାର ସର୍ପଫଣା ନ ଧରେ ଯେତେ ପଦ୍ମତୋଳା ହୋଇଗଲେ । ୨୧ । ଏବା ଜଗନ୍ନାଥ ତାହାରେ କୃତାର୍ଥ କରବାକୁ ନାହିଁ ଯତ୍ନରେ । ଏହି ଦୈନ ଦୀନ-କୃଷ୍ଣ ତାକୁ ମନ ବଚନ କାୟରେ ଧରେ । ମହାପ୍ରଭୁ ହେ । ଏହି କରୁଣା ମୋତେ କର । ଜଗମୋହନର ଗୀତ ନିରନ୍ତର ମୋ କଣ୍ଠେ ହୋଇଥାଉ ହାର । ୨୨ ।



## ପଞ୍ଚମ ଛାନ୍ଦ । ରାମ କେଦାର ।

ଅହେ ସାଧୁଜନମାନେ । ଏବେ ଶୁଣ ଏକମନେ । ଦେବାଣଉତ୍ସବ, ଅଭିଷେକଯାତ୍ରାଙ୍କ ହୁଅଇ ଯେଉଁ ସ୍ଥାନେ ହେ । ସୁଜନେ । ୧ । ହିମ ଶିଶିର ସମୟେ । ଏ ତିନି ଉତ୍ସବ ହୁଏ । ଏ କହନ୍ତି ହିମ-ମହିମା ଯାହା ସେ କରେ ପ୍ରଥମେ ଉଦୟେ ହେ । ସୁଜନେ । ୨ । ଅତି ସୁନ୍ଦର ସୁବାସ । ମହାଲକ୍ଷ୍ମୀଙ୍କ ନିବାସ । ବ୍ରହ୍ମାଣ୍ଡବରତା ବ୍ରହ୍ମାଙ୍କ

୧ ସମୁଦ୍ରରେ । ୨ ଯମ । ୩ ନବାଙ୍କ ଯାତ୍ରା ।

Digitized by srujan ka@gmail.com

ଅଦର ପଦ୍ମ କରଇ ବିନାଶ ହେ । ସୁଜନେ । ୩ । କର୍ମ ଧର୍ମ ଅବ-
କାଶ । ବସନ୍ତବିଳାସବାସ୧ । ଏମନ୍ତ ଦିବସଙ୍କୁ ଲଭ୍ୟ କରଇ ଥାଉଁ
ଥାଉଁ ପ୍ରଭୁ ପାଶ ହେ । ସୁଜନେ । ୪ । ଚକ୍ରବାକ ସୁଖଦାତା । ଜନ
ଆନନ୍ଦକରତା ।° ମହା ପ୍ରତାପୀ ସୂର୍ଯ୍ୟତେଜ°ଖଣ୍ଡଇ ଏମନ୍ତ ହିମ
ଯୋଗ୍ୟତା ହେ । ସୁଜନେ । ୫ । ଥାଉ ଅଉ କଥା ଦୂରେ ୩ ଅଗ୍ନି
ଯେଉଁ ଶୀତେ ଡରେ । ପଳାଇ ଯାଇଁ ପଶଇ ପୁରେ ପୁରେ ନର-
ମାନଙ୍କ ଉଦରେ ହେ । ସୁଜନେ । ୬ । ଏ ଯେନ ଅନେକ ରକ୍ଷେ ।
ତୋଷିଲେ ତାଙ୍କୁ ପ୍ରତ୍ୟକ୍ଷେ । ସେବା କଲେ ଅତି ସଜନମାନ କର
ମହତ ଅତିଥି°ଲକ୍ଷେ ହେ । ସୁଜନେ ।°୭ । ପ୍ରବଳ ଶୀତ ପଳାଏ ।
କଲା ସମସ୍ତଙ୍କୁ ଛିଦ୍ରେ । ଉଦ୍ଧତ ଲୋକଙ୍କୁ°ନତ କରାଇଲା ଗର୍ବ
ଦେଲା ଧନୁ ପ୍ରାୟେ ହେ । ସୁଜନେ । ୮ । ଶୀତ ଭୟେ ଥରହର ।
କମ୍ପିଲେ ଅନେକ ନର । ଦେହ ସଙ୍କୋଚଇ କଙ୍କର ପଶ୍ଚାୟେ
ମୋଡିଲେ କେ ବେନଜାନୁ ହେ । ସୁଜନେ । ୯ । ଶୀତ ନାଶିବା
ଉପାୟେ । କଲେ ଲୋକେ ଠାଏ ଠାଏ । ତୁଳ ତଡ଼ପ୨ ନାନା ବସ୍ତ୍ର-
ମାନଙ୍କେ ପଟଚ୍ଛାଣ କଲେ କାୟେ ହେ । ସୁଜନେ । ୧୦ । ଦଧି
ଦୁଗ୍ଧ ଘୃତମାନ । କଲେ ଅନେକ ଭୋଜନ । ବଳବନ୍ତ ହେବା ଶୀତକୁ
ନାଶିବା ମନେ କରଇ ଏମାନ ହେ । ସୁଜନେ । ୧୧ । ମଞ୍ଜିଷ୍ଠା°
ରଙ୍ଗବସନ । କଲେ° କେହୁ ପରିଧାନ । ଶୀତପବନବାଣ ନିବା-
ରଣେ ସେ ଅଙ୍ଗରକ୍ଷା ସେହୁମାନ ହେ । ସୁଜନେ ।୧୨ । ସବୁଅଙ୍ଗେ
ଶୀତଗୋଳ । ଲୋଡ଼େ କେ ଅଗ୍ନିତ ସ୍ଥଳ । ସନ୍ଧ୍ୟା ହେଲା ବେଳୁ
ସଦନେ ପଶିଲେ ଚିନ୍ତି ଗୋବନ୍ଦ ଗୋପାଳ ହେ । ସୁଜନେ । ୧୩ ।
ଶୀତ ଅଷେ ଏଷ୍ଟୁ ଦିଗେ । ଏମନ୍ତ ବୋଲି ଝଡ଼ ବେଗେ । ବାତା-
ୟନମାନ ନିରୋଧ କରନ୍ତି ବଲ୍ଲବଙ୍କ ମୁଖ ଲାଗେ ହେ । ସୁଜ-
ନେ ।°୧୪ । ଶୀତ କରେ ବୋଲି ଡରେ । ନେତ୩°ଚନ୍ଦନ

---

୧ ବସନ୍ତଖେଳାର ନିବାସ । ୨ ତୁଳାଯୁକ୍ତ ରେଜାଇ ପ୍ରଭୃତି ।
୩ ଧୂମ୍ରବସ୍ତ୍ର କମ୍ବଳ ।

Digitized by srujan ka@gmail.com

ଚନ୍ଦ୍ରରେ୧ । ଅଦର ନ କଲେ ବଡ଼ଲୋକମାନେ ହସନ୍ତୀହସାଇ୨
ଦୂରେ ହେ ଥୁଜନେ ।୧୫। ଅରକ୍ଷିତ ଜନମାନେ । ଆଶା ହବେଶିତ୩ ମ-
ନେ । ଅଗ୍ନି ଦେବତାଙ୍କୁ ନିବେଶିତ୪ ଜିଣି ଦିବସ ବସନ୍ତି ଦୀନେ୫ ହେ ।
ସୁଜନେ । ୧୬ । କେ ବୋଲଇ କାଳ ଜାଡ଼ । ଘୃଣିପକାଇଲା ହାଡ଼ ।
କେଉଁ ଦିନ ମହାପ୍ରଭୁ କରବେ ଏ ଘୋର କଷ୍ଟ ଯିବଁ ଛାଡ଼ ହେ ।
ସୁଜନେ । ୧୭ । ଶୀତ ଅଛୁ ବୋଲି ଜଳେ । କେହୁ ନ ପଶେ
ହଳଳେ । ଜଗନ୍ନାଥ ବୋଲି କେ ପଶଇ ପେଲି କେ ତପ୍ତ ହରେ
ଅନଳେ ହେ । ସୁଜନେ । ୧୮ । କେ ଲୋକ ଶୀତଅଛୁଳେ ।
ପଶିଲେ ଯୁବତୀ କୋଳେ । ଅତି ସୁଖରେ ମୁଖେ ଦେଇ ତାମ୍ବୁଳ-
ପୂରିତ ଧ୍ରୁଖମଣ୍ଡଳେ ହେ । ସୁଜନେ । ୧୯ । ଯାହାର ନାହିଁ ଯୁବତୀ ।
ପଡ଼ିଲା ତାଙ୍କୁ ହପତ୍ତି । କୋଟିଏ ଯମ ସମ କରି ମଣିଲେ ମହାଘୋର
ଶୀତରାତି ହେ । ସୁଜନେ । ୨୦ । ଥିଲେ ସୁନ୍ଦରୀ ଯା କତି । ନ ଗଣ
ତା ଶୀତରାତି । କମ୍ପ ରୋମାଞ୍ଚ ସ୍ୱରଭଙ୍ଗ ବଢ଼ିଲା କ୍ଷୀଣ ହୋଇଲା
ସୁରତି ହେ । ସୁଜନେ । ୨୧ । ଉତ୍ତମ ଯେଉଁ ଯୁବତୀ । ରତିପତି-
ମଦେ ମାତି । କାନ୍ତ ମନ ଜାଣି ରସିକା ସିହାଣୀ କଲା ହପସ୍ରୀତ
ରତି ହେ । ସୁଜନେ । ୨୨ । ଶୀତ ଚରିତ କହିଲେ । ସରବ
ନାହିଁ ଏ ଭଲେ । ଯେଉଁ ଶୀତ ଲାଗି ମିତ୍ର୬ ଚନ୍ଦ୍ରଭାନୁ ବିଗଳିଗିର୭
ବେଗେ ହେଲେ ହେ । ସୁଜନେ । ୨୩ । ଏମନ୍ତ ହିମ ସମୟେ ।
ଜଗନ୍ନାଥ ଦେବରାୟେ । ଦିବ୍ୟ ଘୋଡ଼ାଗ ମାନ ନିଯୋଗ୯ କରି ସେ ଶ୍ରୀ
ଅଙ୍ଗରେ ଲାଗି ହୁଏ ହେ । ସୁଜନେ । ୨୪ । ଶ୍ରୀକର୍ପୂରି
ଗନ୍ଧ ଉଣ୍ଣି୧୦ । ଶ୍ରୀଅଙ୍ଗେ ପେନ୍ଧା ଗଣ୍ଡିଛୁ୧୧ । ସିତ୧୨ ପୀତ ନୀଳ
ଲୋହିତ ବସନ ଶ୍ରୀଅଙ୍ଗଙ୍କୁ ଥାଇଁ ଗଛ ହେ । ସୁଜନେ ।୨୫। ଅନେକ

---

୧ଚନ୍ଦ୍ରକିରଣ ଏବଂ କର୍ପୂରରେ । ୨ଉହ୍ଲାଇ ଜଲ୍ପାଇ ।
୩ଆଶାନ୍ଧୁକୁ । ୪ସ୍ଥାପନ କରି । ୫ଦୁଃଖିତଭାବରେ । ୬ସୂର୍ଯ୍ୟ ।
୭ଅଗ୍ନିକୋଣକୁ ॥ ୮ଉଣାବସ୍ତ୍ର । ୯ନିବଦ୍ଧ । ୧୦ଲଗାଇ ।
୧୧ବସ୍ତ୍ର ବିଶେଷ । ୧୨ଶୁକ୍ଳ ।

Digitized by srujan ka@gmail.com

ମଲ୍ଲୁଆ କୁନ୍ଦ । କୁସୁମିରେ ମାଳବୃନ୍ଦ । ମଣ୍ଡି ହୋଇ ମହାସୁଖ
ଦିଅଇ ସେ ପରମାନନ୍ଦ ଗୋବିନ୍ଦ ହେ । ସୁଜନେ । ୨୬ । ଦିନେ
ଦିନେ ଦିବ୍ୟ ବେଶ । ହୁଅନ୍ତି ସେ ପୀତବାସ । ଦାସର ଦାସ ଦାସ
ହୋଇ ଥିବାକୁ ଦେବତାମାନଙ୍କ ଆଶ ହେ । ସୁଜନେ । ୨୭ ।
ମକରାକୃତି କୁଣ୍ଡଳ । ମଣ୍ଡିଥିଲେ ଗଣ୍ଡସ୍ଥଳ । ମୁଖମଣ୍ଡଳ ଛ ଶୋଭା
ହେଉଥାଏ ନେତ୍ରକୁ ଦେଇ ସୁଫଳ ହେ । ସୁଜନେ । ୨୮ । ଏମନ୍ତ
କେତେ ଦିବସ । ଶିଶିର ହୋଇ ପ୍ରବେଶ । ବର୍ଷାମିତ୍ର ମେଘ[୧] ମହା
ପ୍ରଳୟରେ ଘୋଟନ୍ତି ଦିଶ ଆକାଶ ହେ । ସୁଜନେ । ୨୯ ।
ଶୀତସଙ୍ଗର ସେ ବଳ[୨] । ବେଢ଼ାଇ ସୂର୍ଯ୍ୟମଣ୍ଡଳ । ଦିନକର[୩] କର-
କରବାଳେ[୪] ତାଙ୍କୁ ଦଣ୍ଡେକେ କରେ ନିର୍ମଳ ହେ । ସୁଜନେ । ୩୦ ।
ଆଇ ଆଁଇ ଛାଡ଼ ପଡ଼େ । ସୂର୍ଯ୍ୟଦେବତାଙ୍କୁ ଲୋଡ଼େ । କବାଇ[୫]
ଲାଗି ହୋଇ ଜଗମୋହନ ରାଉତ ବେଶ ନ ଛାଡ଼େ ହେ । ସୁଜ-
ନେ । ୩୧ । ଶିରେ ଶିରସ୍ତ୍ରାଣ[୬] ଶୋଭେ । ସୁର ନର ମନ ମୋହେ ।
ସକଳ ବ୍ରହ୍ମାଣ୍ଡନାଥଙ୍କ ସ୍ୱରଥଚରଣ[୭] ଶ୍ରୀକରେ ରହେ ହେ । ସୁଜନେ ।
୩୨ । ତହୁଁ କଟୁ ଦିନ ଶେଷ । ପୌର୍ଣ୍ଣମାସୀ ପରବେଶ । ଅଭି-
ଷେକ ପାଇଁ ସୁବର୍ଣ୍ଣକଳଶେ ଜଳ ହୁଏ ଅଧିବାସ ହେ । ସୁଜନେ ।।
କମ୍ବୁକଣ୍ଠନାୟକ । ଅଶେଷ ସୁଖଦାୟକ । ପବିତ୍ରଜଳେ ଅଭିଷେକ
ବଢ଼ାଇ ତୋଷନ୍ତି ସମସ୍ତଲୋକ ହେ । ସୁଜନେ । ୩୪ । ଦୟାନିଧି
ସୁଖରାଶି । ଦିବ୍ୟବେଶ ହୋଇ ବସି । ଅନେକ ସେ ଶୋଭା ପ୍ରାଣର
ବଲ୍ଲଭ କମଳା ପାଟମହିଷୀ ହେ । ସୁଜନେ ।। ଚତୁର୍ବିଧ ବାଦ୍ୟ ବାଜେ ।
ପାଶେ ଦଣ୍ଡଛତ୍ର ସାଜେ । କାଶ୍ମୀର[୮] ତଣ୍ଡୁଳ ଦୂର୍ବାଦଳ ଦେଇ ବନ୍ଦାପନା
କରେ ଦ୍ୱିଜେ ହେ । ସୁଜନେ । ୩୬ । ସେ ଦରଶନ ଯାହାର ।
ହୋଇଲା ଧନ୍ୟ ତାହାର । ଅତ ବେଳେ ଜନନୀଠାରୁ କ୍ଷୀର କରିବ
ନାହିଁ ଆହାର ହେ । ସୁଜନେ । ୩୭ । ନବାଙ୍କ ଯାତ୍ରା ଲକ୍ଷଣ ।

---

୧ କୁହୁଡ଼ି । ୨ ସୈନ୍ୟ । ୩ ସୂର୍ଯ୍ୟ । ୪ କିରଣରୂପ ଖଡ୍ଗରେ ।
୫ ବସ୍ତ୍ରବିଶେଷ । ୬ ପାଗ । ୭ ଚକ୍ର । ୮ କୁଙ୍କୁମ ।

Digitized by srujan ka@gmail.com

ଏହି ସମୟରେ ପୁଣ । ନବାନ୍ନ ଲାଗିଲ ସବୁ ନିବେଦନ ହୁଅଇ ଦଧି ପ୍ରମାଣ ହେ । ସୁଜନେ । ୩୮ । ଦେଖି ବଶ ହୁଏ ନେତ୍ର । ସୁନ୍ଦର ଧବଳଛତ୍ର । କଳା କର୍ଣ୍ଣାଠୀ ଉଲ୍ଲେଳ ମାଳମାଳ ଜଗନ୍ନାଥ ଭୋଗ-ପାତ୍ର ହେ । ସୁଜନେ । ୩୯ । ଅନେକ ଭୋଗ ସମ୍ଭାର । କହୁଲେ ହେବ ଅପାର । ବେଦ୍ଭରେ ପ୍ରକାଶ ହୋଇଛି ମକର ସୈଜାଣି ନାମ ଯାହାର ହେ । ସୁଜନେ । ୪୦ । ସୁଧାଲେପ[1] ସବୁଠାରେ । ବଚନ୍ତ ତୋରଣା ଦ୍ୱାରେ । କରୁଣା କର କରୁଣାରେ ପୂରୁଣା ନୁହେ କେ କେତେ ପ୍ରକାରେ ହେ । ସୁଜନେ । ୪୧ । ନାନାବର୍ଣ୍ଣ ଫୁଲମାଳ । ବଡ଼ ବଡ଼ ଉଚ୍ଚ ଚୂଳ । କେତେରୂପ କେତେ ଗୋଷ୍ଠାରୁ ଆସଇ ଭୋଟଇ ନେତ୍ର ଭୃଙ୍ଗ[2] ହେ । ସୁଜନେ । ୪୨ । ଧୂପ ସାର ଜଗ-ଦୀଶ । ହୁଅନ୍ତି ମହାସୁବେଶ । ସେହି ପ୍ରଭୁଙ୍କୁ ସେ ଚୂଳ ମାଳ ଶୋହେ ଜୟ ନୀଳାଦ୍ରି ନିବାସ ହେ । ସୁଜନେ । ୪୩ । ମଣୋହି ବଢ଼ାଇ ହର । ବନ୍ଦାପନା ଲାଗି ସାର । ସୁରନର ମୁନିବୃନ୍ଦ ଘେନ ସିଂହା-ସନ ପରକ୍ରମା କର ହେଣ ସୁଜନେ । ୪୪ । ବାଜଇ ବୀରଠମଳ । ଶଙ୍ଖ ମହୁରୀ ଅନେକ । ଘଣ୍ଟ ମର୍ଦ୍ଦଳ ବେଣୁ ବୀଣା କାହାଳ ଶୁଭେ ଜୟ ଜୟ ଡାକ ହେ । ସୁଜନେ । ୪୫ । ଶ୍ୱେତାତପତ୍ର[3] ଧସଇ । ଚଉର୍ବର୍ଗ ଜୁର ଦେଇ । ବଳେ କଲେ ମଣିମୟ ବିମାନରେ ଲୋକଙ୍କ ବାଞ୍ଛା ପୂରଇ ହେ । ସୁଜନେ । ୪୬ । ଅର୍ଦ୍ଧ ସ୍ୱର୍ଗେ ରହି ସୁରେ[4] । ଦର୍ଶନ କରନ୍ତି ଧୀରେ । ଜୟ ଜୟ ସ୍ତୁତିନତି[5] କର ପୁଷ୍ପ ବରଷନ୍ତି ମସ୍ତ-କରେ ହେ । ସୁଜନେ । ୪୭ । ଅପସରୀ-ବୃନ୍ଦ ମିଳ । ଝଳଝ[6] ଅଙ୍ଗ-ମାନ ତାଳି । ଗୀତଗାଇ ନୃତ୍ୟ କରନ୍ତି ଉଦିତ ଦେଖାଇ ହସ୍ତକା-ବଳୀ[7] ହେ । ସୁଜନେ । ୪୮ । ପ୍ରାସାଦକୁ ପରକ୍ରମା । କର ସେ ଚେତ୍ରକର୍ମୀ । ରନ୍ଧି ହାଣ୍ଡିନ ବଳେ କଲେ ହର କହୁ ନୋହେ ସେ ସୁଷମା ହେ । ସୁଜନେ । ୪୯ । ନବାଙ୍କ ଦ୍ୱିତୀୟାଦିନ ମକର

୧ଚୂନଲେପନ । ୨ଭ୍ରମର । ୩ଶ୍ୱେତଛତ୍ର । ୪ଦେବତାମାନେ । ୫ବନତି । ୬ଦୀପ୍ତିମନ୍ତ । ୭ଅଭିନୟମାନ ।

Digitized by srujan ka@gmail.com

ଯାତ୍ରା ଭିଆଣ । ସେ ପିଛେ ସେ ପଛେ ବନ୍ଧୁର ମକର ଭଣ୍ଡାରାଦି ଦୁଗ୍ଧ-ପାନ ହେ । ସୁଜନେ । ୬୦ । ପୂର୍ଣ୍ଣଚନ୍ଦ୍ରମା ଅକୃତି । ଶାଙ୍ଖଗମାନଙ୍କ ହେଉଅଛି । ଖଣ୍ଡ ଖଣ୍ଡ ମଣ୍ଡା ନିର୍ମଳ ନବାତ ଉଗ୍ର ଭୋଗ ସେହିମତି ହେ । ସୁଜନେ । ୬୧ । ନାନାବର୍ଣ୍ଣେ ପିଠା ଯେତେ । ବର୍ଣ୍ଣନେ ନ-ହବ କେତେ । ମହାସୁପକାରମାନେ ତା ହାଣ୍ଡିରେ ମହାପ୍ରଭୁଙ୍କ ଅଗ୍ରତେ ହେ । ସୁଜନେ । ୬୨ । ଭୋଗ ସାର ଦେବଗଣେ । ବନ୍ଦାପନା ଲାଗି ହୋଇଣେ । ସୁର ନର ମିଶି ଜୟ ଜୟ ଘୋଷି ଅନନ୍ଦେ ପୁଲକ କାୟେ ହେ । ସୁଜନେ । ୬୩ । ଦୀନକୃଷ୍ଣ ଏହି କାଳେ । ପଶି ଲୋକଙ୍କ ଗହଳେ । ଜଗନ୍ନାଥଦେବଗଜଙ୍କ ଦର୍ଶନ କଲା ପୂର୍ବଭାଗ୍ୟବଳେ ହେ । ସୁଜନେ । ୬୪ । ମହାଅନନ୍ଦ ହୋଇଲା । ମହାପ୍ରସାଦ ପାଇଲା । ଅପାର ସଂସାରଶୋକ ଯେତେ ଥିଲା ଦୂର କର ତା ଥୋ-ଇଲା ହେ । ସୁଜନେ । ୬୫ । ଜୟ ଜୟ ଜଗନ୍ନାଥ । ଜୟ ଶ୍ରୀଙ୍ଗ ଚକ୍ର-ହସ୍ତ । ଏହି ଆଜ୍ଞା ମୋତେ ସବୁଦିନେ ଥିବ ଏହି ମୋର ମନୋରଥ ହେ । ସୁଜନେ । ୬୬ । ତୁମ୍ଭ ଶ୍ରୀମୁଖ ଚାହିଁବ । ତୁମ୍ଭ ଚରିତ ଗାଇବ । ଏହି ଅଜ୍ଞା ଦେବ ଜନ୍ମଜନ୍ମାନ୍ତରେ ଏହି କ୍ଷେତ୍ରରେ ରହିବ ହେ । ସୁଜନେ । ୬୭ ।

—:୦:)✲(:୦:—

## ଷଷ୍ଠ ଛାନ୍ଦ ।

### ରାଗ ବସନ୍ତ । ରୂପକ ତାଳ ।

ଅହେ ଜନମାନେ ଏବେ ଏକମନେ ଶୁଣ ଦୋଳଯାତ୍ରା କଥା । ଫ-ଲ୍‌ଗୁଣ ଉଦୟେ ଅନକାର ପ୍ରାୟେ ନାଶ ଯାଉ ଭବବ୍ୟଥା ହେ । ସୁଜନେ । ଯାହା ଦର୍ଶନ କରବାକୁ ଆଗନ୍ତୁ ଅନେକ ନୃପତି । ଅଛି ତୋ-ରାଜ ଧରାଇ ମସ୍ତକରେ ନାନାବର୍ଣ୍ଣର ଧୂଲଛତ୍ରୀ ହେ ସୁଜନେ ।୧।

Digitized by srujan ka@gmail.com

ପ୍ରଫୁଲ୍ଲ୧ ରସାଳ୨ ବକୁଳ ଚାମର ଛତ୍ର ପାର୍ଶ୍ୱରେ ପଡ଼େ । ନାନାବର୍ଣ୍ଣେ ନବପଲ୍ଲବ ପତାକା ପନ୍ତ ପନ୍ତ ହୋଇ ଉଡ଼େ ହେ । ସୁଜନେ । ୩ । କିଂଶୁକ କୁସୁମ ପାଟକରବାଳ୩ ରଙ୍ଗ କେଶରେ ଛୁଅଁଇ । ଅତିହିଁ କ୍ରୋଧ କରି ଦ୍ୱନ୍ଦ୍ୱ ଜବତ ଗୋଚରେ ଥୋଇ ତା ଦେଇ ହେ । ସୁଜନେ । ୪ । କେଳିକଦମ୍ବେ କେଳି କରି ଭ୍ରମରବୃନ୍ଦ୪ ଝଙ୍କାର କରେ । ଯେତେବେଳେ ପରମମଙ୍ଗଳ ଶଙ୍ଖ ଶବଦ ସ୍ୱରେ ହେ । ସୁଜନେ । ୫ । କେତକୀ କୁନ୍ତ କରେ ଧରି ବାହାର ଚଢ଼ି ପବନ ତୁରଙ୍ଗ୫ । ଫୁଲ ଧନୁଶର ଧରି କାମବୀର ସଖା୬ ଥାଇ ତାର ସଙ୍ଗ ହେ । ସୁଜନେ । ୬ । ପ୍ରବଳ କୋକିଳ ନାଦ ବୀରବାଦ୍ୟ ଶୁଭଇ ଅତି ଉଚ୍ଚରେ । ମଲ୍ଲୀ ମାଧବୀ ଫୁଟି ଅନା ସୁବାସ ଧୂପ ପୂରେ ଦିଗନ୍ତରେ ହେ । ସୁଜନେ । ୭ । ଏମନ୍ତ ହୋଇ ଋତୁ-ରାଜ ବୀର ସେ ରହଇ ମଧ୍ୟମଣ୍ଡଳେ । ଚୈତ୍ରେଶ ରସିକ ଚୈତ୍ରେଶ ଉତ୍ସବେ ଦେଖିବାକୁ କୁତୂହଳେ ହେ । ସୁଜନେ । ୮ । ମନ୍ମଥ ମନମଥ୭ ବେଶ ହୋଇ ଜଗନ୍ନାଥ ଦେବରାଜେ । ଅତି ଅମୂଲ୍ୟ ମଣିମୟ ବିମାନ ଆରୋହି କଲେ ବିଜୟେ ହେ । ସୁଜନେ । ୯ । ବାଜଇ ଘଣ୍ଟା ମର୍ଦ୍ଦଳ ଏକସ୍ୱର ହୋଇଣ କାହାଳ ସଙ୍ଗେ । ବାରନାରୀବୃନ୍ଦ ବାହାର ଅଗରେ ନଟନ୍ତି ସୁବେଶ ଅଙ୍ଗେ ହେ । ସୁଜନେ । ୧୦ । ରସିକନାଗରବର ଅଟେ ନୃତ୍ୟ କରିବାକୁ ସେହି ପାତ୍ର । ଏବଲୋକେ ମାତ୍ରକେ କାମଶରେ ରହିବ କାହାର ଗାତ୍ର ହେ । ସୁଜନେ । ୧୧ । ଯେତେବେଳେ ଯାଏ ପଡ଼ି ନ ଥାଇ ସେ ଭ୍ରୂଭଙ୍ଗି କୁଟିଳମାଳା । ତେତେବେଳେ ଯାଏ ନ ଜାଣନ୍ତି ଯୋଗୀ ମକରକେତନ୮ ଜ୍ୱାଳା ହେ । ସୁଜନେ । ୧୨ । ନାସିକା ଫୁଲାଇ ବଙ୍କ ଭ୍ରୂଭ ହୋଇ ମଧୁର ମନ୍ଦ ହସନ୍ତେ । ମହା ବିବେକ ଧଇର୍ଯ୍ୟ ସ୍ୱଳ୍ପଲୋକ କରନ୍ତି ସେ କରଗତେ ହେ । ସୁଜନେ । ୧୩ । ଆଉ ବସନ୍ତକାଳ ମତ୍ତକୋକିଳ ବଚନ କହିବା

---

୧ ପ୍ରସ୍ଫୁଟିତ । ୨ ଅମ୍ବ । ୩ ଦାଢ଼ଖଣ୍ଡା । ୪ ଭ୍ରମରଶ୍ରେଣୀ । ୫ ଘୋଡ଼ା ୬ ବସନ୍ତ । ୭ ମଦନମୋହନ । ୮ କନ୍ଦର୍ପର ।

Digitized by srujan ka@gmail.com

ତେଣେ । ଶୁଣି ନ ଥିବା ଯାଏ ଯାହା ଶ୍ରବଣେ ସୁରମୁନି କର୍ଣ୍ଣେ କର୍ଣ୍ଣେ ହେ । ସୁଜନେ ।୧୪। ଯାହା ନୟନ ଠାରବାକୁ ମଦନ ଅବଧାରି୧ ରହୁଥାଇ । ମହାପ୍ରତାପୀ ସ୍ମରରାଜା ଅଜ୍ଞାକୁ ତସ୍କର ପରାୟେ ହୋଇ ହେ । ସୁଜନେ । ୧୫ । ବ୍ରହ୍ମାଦି ଶଙ୍କର ଦେବଙ୍କୁ ଗଣିଲେହେଁ ଉଦ୍ବୋଧ ନ ଥାଇ ଯେଣେ। ସେ ପରାଭବକୁ ଲଭ୍ୟ କରି ମହା-ଯୋଗୀନ୍ଦ୍ର ପଶିଲେ ବର୍ଣ୍ଣେ ହେ । ସୁଜନେ । ୧୬ । ମହାବଳୀ ସେ ଯୋଗୀରାଜାବଳୀର-ନେତ୍ର-ଅନଳ ପତଙ୍ଗ୨ । ତାଙ୍କ ପ୍ରସାଦେ ଜଗତ ଜୟ କରେ ଧରି ନ ଥିଲେ ସେ ଅଙ୍ଗ ହେ । ସୁଜନେ । ୧୭ । ଯେଉଁ ନାଗରୀଙ୍କ ଅଙ୍ଗୁଁ ଅନଙ୍ଗ ଗ୍ରହଣ କରଣ ମାରେ । ହେଳା ହୋଇ ବହୁ ଅବଳା ତାହାଙ୍କୁ ବୋଇଲା ଅବବେ-କରେ ହେ । ସୁଜନେ ।୧୮। ମଦନ ରଙ୍ଗରେ ଅଦ୍ଭୁତରଙ୍ଗରେ୩ ପକାଇ ଥିଲେ ସେ ଦୃଷ୍ଟି । ନୀଳକମଳ ବୃଷ୍ଟି କଲା ପରାୟେ ଶୋଭା ପାଉ-ଥାଏ ସୃଷ୍ଟି ହେ । ସୁଜନେ । ୧୯ । ଉଚ୍ଚ କୁଚ ପୃଥୁ ନିତମ୍ବ ଭରରେ କରନ୍ତି ମନ୍ଥରଗତି । ମତ୍ତଗଜହଂସ ଜାଣିଲା ପରାୟେ ହଂସଙ୍କ ଧ୍ୱନି କରନ୍ତି ହେ । ସୁଜନେ । ୨୦ । ଏମନ୍ତ ବାରସୁନ୍ଦରୀମାନେ୪ ନୃତ୍ୟ କରନ୍ତି ବିବିଧ ରଙ୍ଗେ । ତଡ଼ିଦାଣ୍ଡେ ବଳେ ଗାହଣ ଲଗାଇ ସୁରନର ବୃନ୍ଦ ସଙ୍ଗେ ହେ । ସୁଜନେ ।୨୧। ଯହୁଁ ଉଜି ଦିଗ ଗଗନ ପୂରି ଯେ ଦିଶଇ ମହାପୁରଙ୍କି । ଅନାଇ ଭକତଜନମାନଙ୍କର ସୁପୁଲକ ହୁଏ ଅଙ୍ଗ ହେ । ସୁଜନେ ।୨୨। ଶ୍ରୀଚୈତ୍ରଯାତ୍ରାସାର ଜଗମୋହନ ଅଗ୍ନି-ଉତ୍ସବ ବଢ଼ାଇ । ପାଠ ପଢ଼ନ୍ତି ଗୃମର ଚନ୍ଦ୍ରାତପେ ଦୋଳମଣ୍ଡପ ମଣ୍ଡାଇ ହେ । ସୁଜନେ । ୨୩ । କି କହିବ ସେ ମଣ୍ଡଣି ଅଡ଼ମ୍ବର ଦେଖିଲେ ନୁହେ ଉପେକ୍ଷି । ଚତୁଃପ୍ରତିମା ପ୍ରାୟେ ଦେବ ରହିଲେ ଅପ-ଲକ ହୁଏ ଆଖି ହେ । ସୁଜନେ ।୨୪। ବିଚିତ୍ର ଖମ୍ବମାନଙ୍କ ମସ୍ତକରେ

---

୧ ମାନି କରି । ୨ ଶିବଙ୍କ ନେତ୍ରଅଗ୍ନିରେ ପତଙ୍ଗ ପରି ଭସ୍ମ ହୋଇଥିବା କାମଗ ୩ସର୍ପବତ୍ କୁଟିଳଭାବରେ । ୪ବେଶ୍ୟାମାନେ ।

Digitized by srujan ka@gmail.com

ସ୍ଫାଟିକସ୍ତମ୍ଭ-କୁମ୍ଭ୧ ଶୋହେ । ସୁବର୍ଣ୍ଣ-ଶଳାକା ବର୍ଣ୍ଣୀରେ ପତାକା ଚଳନ୍ତ ଶୋଭା ନ ପାଏ ହେ । ସୁଜନେ । ୨୫ । ଗୃହ ପାର୍ଶ୍ଵରେ ବହୁଧ ବର୍ଣ୍ଣରେ ଫୁଲମାଳମାନ ଲମ୍ବେ । ମଧୁର ଝଙ୍କାର କରି ମଧୁକର ମଣ୍ଡଳ ନାଦରେ ଚୁମ୍ବେ ହେ । ସୁଜନେ ।୨୬। ନାନା ମଣିମାନଙ୍କରେ ମନୋହର ମଧ୍ୟେ ଚନ୍ଦ୍ର ସୂର୍ଯ୍ୟ ରହେ । ସୁବର୍ଣ୍ଣ ପାଠରେ୨ ସୁବର୍ଣ୍ଣ ଦର୍ପଣ ପନ୍ତି ପନ୍ତି ହୋଇ ଶୋହେ ହେ । ସୁଜନେ ।୨୭। ଇନ୍ଦ୍ରଧନୁରୁ ସମ କରନ୍ତାର ସେ ମାଧୁରୀ ତହିଁ ତ ନାହିଁ । କୁଟୁଣା କରି ଟେକସ୍ଥ ତୋରଣାରେ ତହିଁ ଉପମା ନାହିଁ ହେ । ସୁଜନେ ।୨୮। ଫୁଲଝୁରୀ ଫୁଷ୍କ ହ୍ୟୋତିଷ ଅନାଇ ପଲକ ଉଠଇ ନୁଅଁ । ଫୁଟିଲ ଫୁଲେ ସବୁ ଉଅଣ ହୋଇଛୁ ପ୍ରଭୁ ଫୁଲକୋହିଅ ହେ । ସୁଜନେ । ୨୯ । ଫୁଲପଙ୍ଖା ଫୁଲଅଲଟ ଚାମର ଫୁରୁଣାରେ ଧରି ନରେ । ବେନ ପାଶରେ ମନ୍ଦ ମନ୍ଦ ପଢଇ କି ବହୁବ ବଚନରେ ହେ । ସୁଜନେ ।୩୦। ବେଦେ ବହୁବ ସେ ବାହାର ମଣ୍ଡଣି ବଚନ ମୋହିଗି କେଉଁଠେ । ସୁବର୍ଣ୍ଣ ବର୍ଣ୍ଣ ବାରଣ ବୃଷାଂ ପଦ୍ମଃପେଠୀ୫ ଲକ୍ଷ୍ମୀ ଯେତେ ହେ । ସୁଜନେ ।୩୧। ଠାବେ ଠାବେ ବଳେ ବାଂଟ୍ଯାନ୍ତି ସବୁ ଗୃହକୁଁ ତୋରଣାମଧ୍ୟେ । ସୁଧାଙ୍କ୬ ଲେପରେ ଚନ୍ଦନଜଳ ପଡ଼ି ଅଗୁରୁ ଧୂପହିଁ ହୋଏ ହେ । ସୁଜନେ ।୩୨। ଏମନ୍ତ ଦୋଳମଣ୍ଡପ ଭୂଷଣ ବହ୍ନାନ୍ତ ରଜନୀ ଶେଷ । ଅରୁଣ ଉଦେ ବରୁଣପତିଦିଗ୭ ଚରମେ ଚନ୍ଦ୍ର ପ୍ରବେଶ ହେ । ସୁଜନେ । ୩୩ । ଏମନ୍ତ ଅଭିଶ୍ୟବନ୍ତ ଚନ୍ଦ୍ରକଶୀ ହୋଳ ନ ପାରନ୍ତି ଦେଖି । ଉଷା କାମିନୀ ତାରକା ଅଦୃଶ୍ୟରୁ ଦର୍ଶନ ନ ପାଇ ଦୁଃଖୀ ହେ । ସୁଜନେ ।୩୪। ଅତ୍ୟନ୍ତ ଭାଗ୍ୟବନ୍ତ ପ୍ରାଚୀ୮ ସୁନ୍ଦରୀ ହୋଇ ଅତି ପ୍ରସନ୍ନତା । ସ୍ୱଅନୁରାଗେ ଦର୍ଶନ କରେ ଯେନ ସଚ୍ଛତା୯ ଚିହ୍ନ ରଚତା ହେ । ସୁଜନେ ।୩୫। କୋଳକ ବାଣୀ କୁହୁକପଟେ୧୦ ସ୍ତୁତି ବଚନ

---

୧ସ୍ତୁମ୍ଭକଳସ । ୨ଉତ୍ତମବର୍ଣ୍ଣ ପାଠବସ୍ତ୍ରରେ । ୩ପ୍ରଫୁଲ୍ଲ । ୪କଦଳୀ । ୫କଣ୍ଡିଅ । ୬ଚୂନ । ୭ପଶ୍ଚିମ । ୮ପୂର୍ବଦିଗ । ୯ସୂର୍ଯ୍ୟ । ୧୦କୁହୁ-କୁହୁ ଧ୍ୱନି ବ୍ୟାଜରେ ।

Digitized by srujan ka@gmail.com

ପର ସେ ଘଷ । ଏହି ସମୟେ ମହାପ୍ରଭୁ କରନ୍ତି ଦୋଳମଣ୍ଡପେ ପ୍ରବେଶ ହେ । ସୁଜନେ ।୩୬। ତତଂ ଅନନ୍ଦ୍ ସୁସ୍ବର ଘନବାଦ୍ୟ୩ ବାଜଇ ଅତି ପ୍ରବଳେ । କ୍ଷୀରସମୁଦ୍ର ଗର୍ଜନ ଗର୍ଜି ହୁଏ ଜୟଶବଦ ଗହଳେ ହେ । ସୁଜନେ । ୩୭ । ପ୍ରଥମ ଦୋଳ ଦର୍ଶନକୁ ଉଦ୍ୟାହା ହୋଇ ଯେ ଅସନ୍ତି ଲୋକ । ଅବନୀମଣ୍ଡଳ ଅଦୃଶ୍ୟ ହୁଅଇ ଅନନ୍ଦ ହୁଏ ଅନେକ ହେ । ସୁଜନେ । ୩୮ । ନବୀନ ରସାଳ ଫଳ୪ ଫୁଲ ଫଳ ପ୍ରଭୁଙ୍କ ସ୍ଥମୁରେ ଦେଇ । ନାନା ପ୍ରକାରେ ବରମାନ ମାଗନ୍ତି ଅନୁରାଗବନ୍ତ ହୋଇ ହେ । ସୁଜନେ । ୩୯ । ବାଞ୍ଛାକଳ୍ପ ସେ ବାଞ୍ଛା ପୂର୍ଣ୍ଣ କରନ୍ତି ପରମଦୟାଳୁ ଯନ୍ତୁଁ । ଅଶେଷ କୋଟି ଜନମ ପାପରାଶି ବନାଶନ୍ତି ଗୃନ୍ଥି ଗୃନ୍ଥି ହେ । ସୁଜନେ । ୪୦ । ଅହେ ଜନମାନେ ଦେଖିଅଛ କାହିଁ ହେଉଥିଲେ ଯେ ପଷ୍ଟାଇ । ଦେଖିଲା ଲୋକଙ୍କୁ ମହାସୁଖ ଦେଇ ଦୁଃଖ ଦିଅନ୍ତି ଘୁଞ୍ଚାଇ ହେ । ସୁଜନେ । ୪୧ । ଅପଣା ଉସ୍ଛବେ ଉସ୍ଛବ୫ ଦେବାକୁ ସେହି ପ୍ରଭୁ ବଦେକତା । ଯେଉଁ ଉସ୍ଛବରେ ବଧତା ଲୀଳାରେ ଶୋଭ୍ୟ ଯଙ୍ଗ ଫଗ-ଚତା ହେ । ସୁଜନେ । ୪୨ । ଯତି ସନ୍ନ୍ୟାସୀ ନାରୀଙ୍କ ସଙ୍ଗେ ମିଶି ଦର୍ଶନ କରନ୍ତି ରଙ୍ଗେ । ଦୂଷଣ କୋହେ ଭୂଷଣ ପ୍ରାୟେ ବିଶେ କୁଙ୍କୁମ ଲାଗିଲେ ଅଙ୍ଗେ ହେ । ସୁଜନେ । ୪୩ । ଏମନ୍ତ ହୋଇ ସେ ହଠେ-ନାଗରଙ୍କ ଦୋଳ ମହୋତ୍ସବ ଲୀଳା । ବ୍ରହ୍ମାଦି ଦେବ ମାନବ ବାଳ ବୃଦ୍ଧ ସମସ୍ତେ ଯହିଁର ଭୋଳା ହେ । ସୁଜନେ ।୪୪। ମନ ଧ୍ୟାନେ ଲୀନ କରି ଯୋଗୀଜନ ଯାହାଙ୍କୁଟି ନ ଦେଖନ୍ତି । ସେ ପ୍ରଭୁ ଏମନ୍ତ ମହାଦୟାବନ୍ତ ମାନବ ସଙ୍ଗେ ଖେଳନ୍ତି ହେ । ସୁଜନେ । ୪୫ । ଦନ୍ତୀଦନ୍ତ ଦୋଳା ଉପରେ କମଳାବଲ୍ଲଭଙ୍କ ଦୋଳଲୀଳା । ଧ୍ୟାବ-ଲେ ସେ କାଳ ନାହିଁ ନାହିଁ କାଳଦଣ୍ଡ୭ ଭବଭୟଜ୍ୱାଳା ହେ । ସୁ·

---

୧ତାରଯୁକ୍ତ ବାଦ୍ୟଯନ୍ତ୍ର। ୨ମୃଦଙ୍ଗାଦି । ୩ଘଣ୍ଟା, ମନ୍ଦିରା କର-ତାଳ ପ୍ରଭୃତି । ୪ଅମ୍ବୃଫଳ । ୫ଅନନ୍ଦ । ୬ଚଞ୍ଚଳମନା । ୭ଯମଦଣ୍ଡ ।

Digitized by srujan ka@gmail.com

ଜନେ । ୪୬ । ଦ୍ୱିତୀୟ ଦୋଳ ଅତିଶୟ ଗହଳ ନୃପତି ଦର୍ଶନ କରେ । ମହାପାପଗଣି ତିନ ତାପ ନାଶି ମହାପାତକୀଙ୍କୁ ନିସ୍ତରେ ହେ । ସୁଜନେ । ୪୭ । ଧୂପରେ ବଜେ ଦେବତୁଂଧିଦେବଗଣ ବାଜେ ଘଣ୍ଟା ଘନ ଘନ । ଚନ୍ଦ୍ରକୁ ଚକୋର ପ୍ରାୟେ ସୁର ନର ସବୁ ଏକନୟନ ହେ । ସୁଜନେ । ୪୮ । ମଣୋହି ବଡ଼ାରୁ ବନ୍ଦାପନା ହୋଇ ସାରି ତୃତୀୟ ଦୋଳକୁ । ସମସ୍ତ ଲୋକଙ୍କୁ ଗଣିନାବ ଦେଲେ ଭବସିନ୍ଧୁ ତରିବାକୁ ହେ । ସୁଜନେ । ୪୯ । ତମାନ୍ତୁ ଅସେହ ପ୍ରଭୁ ଭବଗ୍ରାହୀ ବୃନ୍ଦ ଦୋଳମଣ୍ଡପକୁ । ନୀଳାଦ୍ରି ନଗରକୁ ବିଜେ କରି ସେ ମଣ୍ଡଣି ସିଂହାସନକୁ ହେ । ସୁଜନେ ।୫୦। ଏମନ୍ତ ହୋଇ ସେ ଜଗନ୍ନାଥଦେବ ନୃପତିଙ୍କ ଦୋଳଲୀଳା । ପାରିଲେ ଏ ଲୀଳା ଲୀଳାଭବସୂତ୍ରେ ଗୁନ୍ଥି କଣ୍ଠେ କର ମାଳା ହେ । ସୁଜନେ । ୫୧ । ନୋହିଲେ କର୍ଣ୍ଣମଣ୍ଡନ କର କର ଲୋକଙ୍କୁ ସୁନ୍ଦର ଦିଶୁ । ଜଗନ୍ନାଥ ଭବ ନ ଜାଣିବା ଲୋକେ ସ୍ୱଭାବେ ଦ୍ୱିପଦପଶୁ ହେ । ସୁଜନେ । ୫୨ । ଯେଉଁ ମାନୁଷଧନ କରଛ ମଣ୍ଡନ କେତେଦନ ଅଛି ଥିବ । ନାନା-ଅଳଙ୍କାର ପରାୟେ ଶରୀର ସଙ୍ଗତେ ଯେ ନ ଯିବ ହେ । ସୁଜନେ ।। ହୃଦଘରୁ ଅରେ ଥିଲେହିଁ ହେଳରେ କରିବ ଏ ଉପକାର । ପଡ଼ିଗଲେ କାଳେ ନ ବାନ୍ଧିବ ତଳେ ଦୁଃସହ କାଳକାନ୍ତାର ହେ । ସୁଜନେ ।୫୪। ଏକା ଜଗନ୍ନାଥ ନାମ କର୍ଣ୍ଣ କଣ୍ଠଦେଶରେ କର ଭୂଷଣ । ଥିଲେ କରକୁ ମଣ୍ଡନ କରି କର ଉତ୍ତମ ଦାନ କଙ୍କଣ ହେ । ସୁଜନେ ।୫୫। ଦୟା ଆଭରଣ ହୃଦୟରେ ଧର ସଂସାର ସୁନ୍ଦର ଏହୁ । ବାରନାରୀ ପ୍ରାୟେ ବେଶ ହୋଇବାର କିଛିହିଁ କାରଣ ନାହିଁ ହେ । ସୁଜନେ । ୫୬ । ବିବେକ ଦୃଷ୍ଟିରେ ବିଗୃହଣ ଦୃଷ୍ଟ ନମା କହିଲେ ଛଡ଼ା ହେବ । କୃପ-ଣକୁ ଲୋଭୀ ସ୍ତୁତି କଲା ପ୍ରାୟେ ଶ୍ରମହିଁ ସିନା ରହିବ ହେ । ସୁଜ-ନେ । ୫୭ । ଦୀନକୃଷ୍ଣ ବୋଲେ ଭଲ ହେବା ହେଲେ ଜଗନ୍ନାଥ ନାମ ଘୋଷ । ଯେତେବେଳେ ପଡ଼ିଯିବ କାଳଧାଡ଼ି ନୋହିବଟି ଅବ-କାଶ ହେ । ସୁଜନେ । ୫୮ । ଏହି ପୋନ ପଦ-ପଞ୍ଜୁଲୀ ମଧ୍ୟରେ ଶୁକ୍ର

Digitized by srujan ka@gmail.com

ପ୍ରାପ୍ତେ ହୋଇ ପଶ । ହରେରାମକୃଷ୍ଣ ଗୋବିନ୍ଦ ଗୋପାଳ ଅନନ୍ତ ଅଚ୍ୟୁତ ଭ୍ରଷ ହେ । ସୁଜନେ । ୫୯ ।



ସପ୍ତମ ଛାନ୍ଦ । ରାଗ—ବସନ୍ତ ।

ମଧୁପ ଚଉତିଶା ବୃତ୍ତେ ।

ଅହେ ସାଧୁଜନେ ଶୁଣ ଏକମନେ ଚନ୍ଦନଉତ୍ସବ ଚରିତ । ଗ୍ରୀଷମଋତୁରେ ଦିନକର କରେ୧ ମହୀ ହୁଏ ମହାତପତ । ସୁଜନେ । ଶୁଖନ୍ତ ମହାସରୋବର । ମହାବରହୃଣୀ ପ୍ରାପ୍ତେ ତରଙ୍ଗିଣୀମାନେ ହୁଅନ୍ତ କ୍ଷୀଣତର । ୧ । ଲୁଚ୍ଚୁମ୍ଭୀ ବୀନଜନମନ ପ୍ରାପ୍ତେ ମହୀ ହୁଅନ୍ତ ସନ୍ତାପିତ । ଦିଶେ ଦିଶେ ମୃଗତୃଷ୍ଣା୨ ନୃତ୍ୟ କରେ ମୃଗାକ୍ଷୀ ନୟନ ଯେମନ୍ତ । ସୁଜନେ । ଜାତ ହୁଏ ମହାମଣ୍ଡଳୀ୩ । ଠାବେ ଠାବେ ଭଲୁଲତାମାନେ ପୂର ଅତପତାପରେ ମଉଳ । ୨ । ମହାଜପତରେ ମଣ୍ଡିତ ପ୍ରାପ୍ତେ ମଧପାଣ୍ଡବ ଦର୍ପମନ୪ । ନ ଛାଡ଼ି କାମଂ୫ କାମଦୃଷ୍ଟା ଯାବକୁ ପ୍ରଫୁଲ୍ଲ୬ ଫୁଲରେ ଶୋଭନ । ସୁଜନେ । ହେଲେ ସୁକୁମାରୀ ଶୀର୍ଷ । ଭେଦେ ନୀରସରେ ସାରସ୭ ବକାଶ ବାୟରେ ପୂର୍ଣ୍ଣ କରେ ଦିଶ । ୩ । ବନେ ବନାନଳ ଜଳନ୍ତ ପ୍ରବଳ ଫୁଟନ୍ତ ଭୃଣଧ୍ୱଜ-ମାନେ୮ । ଶାଲ୍ମଳୀଫଳ ଫୁଟି ତୁଳା ସଘାତ୯ ଉଡନ୍ତ ପବନେ ଗଗନେ । ସୁଜନେ । ବନଜୀବମାନେ ଅକୁଳି । ବର୍ଣ୍ଣ ବାରଣ୧୦ ଅନେକ କଷଣ ଲଭନ୍ତ ନ ପାଇ ସଲିଲ । ୪ । ଗ୍ରୀଷମେ ବକଳ

୧ସୂର୍ଯ୍ୟଙ୍କ କିରଣରେ । ୨ମରୀଚିକା । ୩ଘୂର୍ଣ୍ଣୀବାୟୁ । ୪ଅର୍ଜୁନ-ବୃକ୍ଷ ଏହି ପ୍ରସ୍ଫୁଟିତ ହୁଏ । ୫କମନୀୟ । ୬ପ୍ରସ୍ଫୁଟିତ । ୭ପଦ୍ମ । ୮ହାଉଁଶ ସବୁ । ୯ସମୂହ । ୧୦ହସ୍ତୀ ।

Digitized by srujan ka@gmail.com

ହୋଇ ପଶିଲେ ଲୀନ ହୋଇ ତରୁମାନଙ୍କେ । ଫେନ ଉଦଗାର
ଗନ୍ଧର୍ବ-ବଇଶାଂ ନେଟନ୍ତି ପଡ଼ି ମହୀପଙ୍କେ । ସୁଜନେ । ମୟୂରପୁଚ୍ଛ
ଛାଇତଳେ । ତପ୍ତଙ୍କୁ ପକାଇ ଭୁଜଙ୍ଗମ ଯାଇ ଶଙ୍କ କରଇ
ହଙ୍କଲେ ; ୫ । ମତ୍ସ୍ୟ କଚ୍ଛପ ମଣ୍ଡୁକମାନେ ମୂର୍ଚ୍ଛାଗତ ହୁଅନ୍ତି ଅଲ୍ପ-
ଜଳେ; ପଥିକମାନେ ପଥଶ୍ରମେ ପ୍ରବେଶ ହୁଅନ୍ତି ବନ୍ଧୁଘଦ[2] ତଳେ ।
ସୁଜନେ । ଜଦାପେ[3] ପୂର୍ଣ୍ଣ ହୁଏ ଦେହ । ଚଣ୍ଡ କର[4] ଅତ୍ତ ତପତ
ସମସ୍ତେ କେ ଜଳେ କରେ ଅବଗାହ୍ନ[5] । ୬ । ଅଙ୍ଗେ ଅଙ୍ଗେ
ଘାମଘୋମ ଗଲା ପ୍ରାଣେ ଶୟନେ ଅତି ଅଶକତ । ମନେ ଏମନ୍ତ
ପ୍ରତେ ହୁଏ ବସନ୍ତସଖା ବନ୍ଧୁକ ଦୁଃଖମତ । ସୁଜନେ । ତଥାପି
ଭୁଜଙ୍ଗନାମାନେ । ତୁଙ୍ଗସ୍ତନରେ ଚନ୍ଦନପଙ୍କ ଲେପି ପ୍ରବୋଧ
କରନ୍ତି ଯତନେ । ୭ । ଠାବେ ଠାବେ ଜଳ-କ୍ରୀଡ଼ାରେ ଚଞ୍ଚଳ
ଚଞ୍ଚଳାପ୍ଲୁତନେତ୍ରାମାନେ[6] । କେ ଆଗେ ବୁଡ଼ନ୍ତି କେ ପଛେ ନେଉଡ଼ନ୍ତି
କେ ଜଳ ପକାନ୍ତି ସଘନେ । ସୁଜନେ । ଜଳୁ କୁସୁମ କେ ତୋଳନ୍ତି ।
ପହଁରି ଗୋଡ଼ାଇ ପକ୍ଷୀ ଉଡ଼ାଇ କେ ତରଙ୍ଗ ଉଠାଇ ଖେଳନ୍ତି ।୮।
ପଣା ପଇଡ଼ ପନସ ପକ୍ୱଅମ୍ବ ବପ୍ରବଦନେ କେ ଦିଅନ୍ତି । ପଣା ପାଣି-
ଛତ୍ର ଦେଇ କେ ପବିତ୍ରମନରେ ଆନନ୍ଦ ହୁଅନ୍ତି । ସୁଜନେ । ଶୀତେ
କେ କରେ ଜଳଶାୟୀ । ସେବକ ମାଳମାନେ ଉଚ୍ଚେ ଡାକନ୍ତି ଜଳ-
ଘଟମାନ ବସାଇ । ୯ । ଜଗନ୍ନାଥ ଅନୁଗ୍ରହୀ ଲୋକମାନେ ଜଳଯନ୍ତ୍ର-
ପୁରେ ପ୍ରବେଶ । କର୍ପୂର ଚନ୍ଦନ ଅଙ୍ଗେ ବିଲେପନ ପଙ୍ଖାପବନରେ
ସନ୍ତୋଷ । ସୁଜନେ । ଦିନ ହରନ୍ତି ସେ ହରଷେ । ବସୁଦେବ କଥା-
ମୃତ ମିଶାଇଣ ବୀଣାମର୍ଦ୍ଦଳ ଗୀତରସେ । ୧୦ । ଏମନ୍ତ ସମସ୍ତ
ଦେଖି ଦେବଗଣ ବ୍ରହ୍ମାଣ୍ଡ ଶୀତଳ ଅର୍ଥରେ । ଅନେକ ସୁବାସ
କର୍ପୂର ଚନ୍ଦନ ଲାଗି ହୁଅନ୍ତି ଶ୍ରୀଅଙ୍ଗରେ । ସୁଜନେ । ବାଜଇ
ନାନାବାଦ୍ୟମାନ । ଘଣ୍ଟା ମର୍ଦ୍ଦଳ ବେଣୁ ବୀଣା ଗୀତରେ ପୂରୁଥାଇ

---

୧ମଇଁଷି । ୨ବରଗଛ । ୩ଝାଳରେ । ୪ସୂର୍ଯ୍ୟ । ୫ସ୍ନାନ ।
୬ଚଞ୍ଚଳବସ୍ତ୍ରତନୟନାସ୍ତ୍ରୀମାନେ ।

Digitized by srujan ka@gmail.com

ଜଗମୋହନ । ୧୧ । ଚତୁର ନଟଙ୍କ ବେଶମାନ ହୋଇ ନୃତ୍ୟ କରନ୍ତି ଅପସରା । ପଙ୍ଖା ଅଲଟ ଚାମର ପଡ଼ିବାରେ ଚୋରା ଉପରେ ବିଶେ ଚୋରା । ସୁଜନେ । ନିତେ ନିତେ ଯେଉଁ ଆନନ୍ଦ । ଅବଲୋକନ କଲା ଲୋକ ଜାଣେଇ ଜାଣନ୍ତି ପ୍ରଭୁ ଅବିକନ୍ଦ । ୧୨ । କର୍ପୂର ଗନ୍ଧରୁ ପବନ ଲାଗି ସେ ହୋଇଛି ଅଶେଷ ମଙ୍ଗଳ । କଦଳୀ-ବରରେ[୧] ଅନେକ ଏକସର ଦୋସର ଫୁଲଚୂଳ ମାଳ । ସୁଜନେ । ସେହୁ ପ୍ରଭୁଙ୍କୁ ଶୋଭା ପାଏ । ଆଉ ସେ ଚନ୍ଦନପାତ୍ରୁ ଦେଖା ମନେ ପିଣ୍ଡରେ ପ୍ରାଣ ଥିବା ଯାଏ । ୧୩ । କର୍ପୂରଲାଗି ସାତ ଭୋଗ ବଢ଼ାଇ ହୁଅନ୍ତି ପ୍ରଭୁ ବନ୍ଦାପନା । ମହାପାତକୀ ପୁନାସୀର[୨] ହୁଅନ୍ତି କର ସେ କାଳକୁ ଭ୍ରବନା । ସୁଜନେ । ଅଗୋହଣ କର ଯାଜକୁ । ବର୍ଣ୍ଣଦାଣ୍ଡେ ବଡ଼ ଗହଣ ଲଗାଇ ବିଜୟ କରନ୍ତି ଜଳକୁ । ୧୪ । ଭବଜଳଗର୍ଣ୍ଣି[୩] ମଧରେ ନ ଭ୍ରସି ଯେଉଁ ପ୍ରଭୁ ନାଉବଳରେ । କେ କାଳବଳରେ କୌତୁକକେଳରେ ବୁଡ଼ନ୍ତି ଅଳପ ଜଳରେ । ସୁଜନେ । ସେ ବର[୪] ରସିକନାଗର । ନୃତ୍ୟଗୀତରେ ସବୁଙ୍କେ ବଡ଼ ବଶ ଷଟଣ ନ କରନ୍ତି ଅନ୍ତର । ୧୫ । ଦେଖି ଦିନ ଶେଷ ହୋଇ ଦିବ୍ୟ ବେଶ ଗୃପରେ ବିଜୟ କରନ୍ତି । ଖଦି ଅଲଟ ଚାମର ପଙ୍ଖା ଆଦି ସେବକେ ଝୁଣ୍ଟଣି ଧରନ୍ତି । ସୁଜନେ । ଧର କେ ଚନ୍ଦନପିଚକା । ଝଟେଶ ପାଶେ ରହୁ ଆନନ୍ଦକୁ ବହୁ ମାରନ୍ତି ଅଗ୍ରେହି ନଉକା । ୧୬ । ମଣ୍ଡପଅଙ୍କେଁ ମଣି-ମଣ୍ଡପଲ୍ୟଙ୍କେ ବହୁ ମୂଲ୍ୟ ଦିବ୍ୟ ତଟଙ୍କେ[୫] । ଅପସରକୁ[୬] ଅପସର ବିଜୟ କରଥାନ୍ତି ପ୍ରଭୁ କଷଙ୍କେ । ସୁଜନେ । ଚନ୍ଦ୍ର ଉଦିଆ ଚନ୍ଦ୍ର-ଦୀପ । ଗୃହପାଶେ ଲାଗି ଶୋଭା ଆଉଥାଇ ଚହକୁଥାଇ ସୁନାବାସ ।। ଗୁରୁରୁକ୍ମୀକର[୭] ଚମ୍ପକବରନୀ ଚଞ୍ଚଳ ଗୃମଞ୍ଜୁଲୋଚନୀ[୮] । ଚଉଷଠୀ କଳା ରସ୍ତରେ କୁଶଳୀ କନ୍ଦର୍ପଦର୍ପବିମୋହନୀ । ସୁଜନେ । ଚନ୍ଦ୍ର-

୧ ଦେହରେ । ୨ ଇନ୍ଦ୍ର । ୩ ସଂସାରସମୁଦ୍ର । ୪ ଶ୍ରେଷ୍ଠ । ୫ ଖଟ୍ଟୁଳିରେ । ୬ ଗର୍ଭଅଙ୍କୁ । ୭ ସୁବର୍ଣ୍ଣ । ୮ ମୃଗନେତ୍ରୀ ।

Digitized by srujan ka@gmail.com

ବଦନୀ ଗୁରୁକେଶୀ । କୁନ୍ଦ ସୁନ୍ଦର ଦଶନୀ ମନ୍ଦହାସ୍ୟ ମଧୁର ସୁଧା ପିକ-
ଭାଷୀ ।୧୮। କଟମ୍ବବଣ୍ଟି ଉଚ୍ଚକୁଚଶୋଭନୀ ଘନଜଘନୀ ନୃତ୍ୟକାରୀ ।
ତାଙ୍କ ମାନ ଗ୍ରାମ୍ୟ ଲୟକର ଅରମ୍ଭ[୨] ସକଳ ଜନ ମନୋହାରୀ ।
ସୁଜନେ । ନୃତ୍ୟ କରନ୍ତି ସେ ଘୁମୁରେ[୧] ନାନା ଅଳଙ୍କାର ଅଙ୍ଗେ
ଅଳଙ୍କାରି[୩] କର ହସ୍ତକ ହରଷରେ ।୧୯। ମନମଥ[୪] ପାଶ ପରାୟେ
ପ୍ରକାଶ ଶୋଭା ହସ୍ତକ ହସ୍ତ ତୋଷ । ସେ ଠାଣିମାଣିରେ ହାସ
ଚାହାଣିରେ କା ମନ ନ ପଡ଼ଇ ଧସ । ସୁଜନେ । କେତେ କହିବ ସେ
ଚରିତ । ଚନ୍ଦ୍ର ଉଦେ କାଳେ ଗଗନମଣ୍ଡଳେ ସହଜେ ନ ଦିଶେ
ଖଦ୍ୟୋତ[୫] ॥ ଜଗତ କୃତାର୍ଥ କରିବାକୁ ପାର୍ଥ[୬]ରଥରେ ବିଜେ
ଜଗନ୍ନାଥ । ଦରଶନ ଜନେ କର ଦରଶନ ମହାପରମଗତିପଥ ।
ସୁଜନେ । ଧନ୍ୟ ସେ ନଉକାବିହାର । ଇନ୍ଦ୍ରପଦବୀହିଁ ଇତର
ଦିଶଇ ଏ ଅବଲୋକନ ଯାହାର ॥ ବୃନ୍ଦାରକବୃନ୍ଦ[୭] ବହାଇ ଆନନ୍ଦ
ଜୟ ଜୟ ସ୍ତୁତି କରନ୍ତି । ଦୁନ୍ଦୁଭି ବଜାଇ ସପୁଲକ ହୋଇ ଶିରେ
କୁସୁମ ବରଷନ୍ତି । ସୁଜନେ । ଯାତ୍ରା ବହାଇ ଦେବଗଣେ ବିମାନେ
ଅଗ୍ରେହି ଜନମନ ମୋହି କରନ୍ତି ବାହୁଡ଼ାବିଜୟେ । ୨୨ ।
ଶ୍ୱେତାତପତ୍ର[୮] ଚନ୍ଦ୍ର ସୂର୍ଯ୍ୟ ତାରସ କଳାକନାଠ ମାଳମାଳ । ଯଦି
ଅଲଟ ଶୁଆର ଷଣ୍ଢ ଲେଖା କର ନୁହଇ ସେ ପ୍ରବଳ । ସୁଜନେ ।
ଚନ୍ଦ୍ର-ଦୀପ ଚନ୍ଦ୍ରଉଦିଅ । ଦୂଲା ଦିହୁଡ଼ି ଯାଉଁ ଯାଉଁ ଲାଗି ସେ
ନ ଦେଖାନ୍ତି ଚନ୍ଦ୍ରଉଦିଅ । ୨୩ । ବାଟପାକ ରଙ୍ଗଭୂମି[୯] କର
ରଙ୍ଗ[୧୦] କରନ୍ତି ବର ବାରଙ୍ଗନା[୧୧] । କାମଶାସ୍ତ୍ରଜିତା ସଙ୍ଗୀତପଣ୍ଡିତା
ସମସ୍ତେ ପ୍ରେମେ ଜିତ ଯୌବନା । ସୁଜନେ । ଧନ୍ୟ ତାଙ୍କର ଭାଗ୍ୟରାଶି ।
ତ୍ରୈଲୋକ୍ୟଠାକୁର ଆଗେ ନୃତ୍ୟ କର ଲଗାନ୍ତି କାମମୋହ-

---

୧ ସ୍ୱର୍ଣ୍ଣାଂଶ ବିଶେଷ । ୨ ଉପଯୁକ୍ତ । ୩ ମଣ୍ଡନ । ୪ କନ୍ଦର୍ପ ।
୫ ଜୁଳୁଜୁଳା ପୋକ । ୬ ଅର୍ଜୁନ । ୭ ଦେବତାମାନେ ।
୮ ଶୁକ୍ଳଛତ୍ରୀ । ୯ ନୃତ୍ୟଭୂମି । ୧୦ ନୃତ୍ୟ । ୧୧ ମାହାରୀ ।

Digitized by srujan ka@gmail.com

ପାଣି । ୨୪ । ଏମନ୍ତେ ବଇସ୍ତେ କର ଦେବଗୃହେ ନୀଳାଦ୍ରି ନଗରେ ପ୍ରବେଶ । ଧୂପ ସାର ବଡ଼ଦାଣ୍ଡ ଦ୍ୱାର ବଢ଼ାଇ ପୁଷ୍ପଅଞ୍ଜଳ କର ଶେଷେ । ସୁଜନେ ଏ ପଦ୍ମକାନ୍ତ ଦିବ୍ୟ ପଲ୍ୟଙ୍କେ । ପ୍ରାଣବଲ୍ଲଭ ପାଟମହାଦେଈ ସେ କମଳା ସେବନ୍ତ ଜଣଙ୍କେ । ୨୫ । ନିତି ଏହିମତି ଚନ୍ଦନ-ଉତ୍ସବ ହୁଅଇ ସ୍ନାନଯାତ୍ରା ଯାଏ । ତାହାତ ଶୁଣିବ ତିନି ତାପ ଯିବ ମହାପବିତ୍ର ଦେବ କାୟେ । ସୁଜନେ । ସଂସାରେ ଏହି କଥା ସୁଖ । ଏ ବାହାରେ ଅଉ ଯେତେକ ଦେଖୁଛ ଇନ୍ଦ୍ରଜାଲ ପ୍ରାୟେ ସେ ମିଛ । ୨୬ । ଯେଉଁ ଦେହ ଘେନି ଜନମି ଅବନୀ ତାହା ନ ନେଇ ଯିବା ବେଳେ । ମୋହ ଘର ମୋହ କୁଟୁମ୍ବ ବୋଲି ତା ଅଟୋଇ ମାୟାମୋହଜାଲେ । ସୁଜନେ । ମନେ ବିଗ୍ଭର କର ଏହା । କେ କାହାର ତାତ କେ କାହାର ମାତ କେ କାହା ଭ୍ରାତ ବନ୍ଧୁ ସାହା । ୨୭ । ପାରଲେ ଦୀନଜନରେ ଦାନ ଦିଅ ସକଳ ଜୀବେ ଦୟା କର । ଧର୍ମ କର୍ମ କର ଛାଡ଼ ନ ବିଗ୍ଭର ସାଧୁସଙ୍ଗତରେ ବିହର । ସୁଜନେ । ଭଜ ଶ୍ରୀ ନୀଳଗିରିନାହା । ମନ ବଚନ କର୍ତ୍ତବ୍ୟ ଦୀନକୃଷ୍ଣ ଭରସା କରଅଛ ଯାହା । ୨୮ ।

---

## ଅଷ୍ଟମ ଛାନ୍ଦ ।

ରାଗ ଗୁଜ୍ଜରୀ ଖେମଟା । ଏକତାଳୀ ।

ଅହେ ସାଧୁଜନମାନେ ଶୁଣ ଶ୍ରବଣ । ମହାଗ୍ରୀଷମଋତୁରେ ଅରତ୍ରାଣ । ଅନେକ ଚନ୍ଦ୍ର ଚନ୍ଦନ ଚର୍ଚ୍ଚିତ୍ତ ହେଲେ । ଅନେକ ଶୀତଳ ଦ୍ରବ୍ୟ ମନୋହର କଲେ । ଅନେକ ଅଲଙ୍କାର ଲାଗି ହେଲେ ଶ୍ରୀଅଙ୍ଗେ । ଏତେକେ ହେଁ ସନ୍ତାପିତ ହେଲା ଶ୍ରୀଅଙ୍ଗ । ୧ ।

---

୧ ଲେପିତ । ୨ ଜଗନ୍ନାଥ । ୩ ଶୋଭାଯୁକ୍ତ ଦେହ ।

Digitized by srujan ka@gmail.com

ସ୍ନାନ କରୁଥିଲୁ ମନେ ସ୍ମର କର । ଏତମ୍ଭୁଂ ବୋଲିଲେ ଶଙ୍ଖ
ଆରଙ୍ଗ ଯାଗ୍ରା୨ । ସ୍ନାନମଣ୍ଡପକୁ ସୁଧା ଲେପ ଦିଅାଇ । ମଣ୍ଡଣ କମନୀୟରେ
କଣ୍ଡାର ଫିଟାଇ । ପାଟନେତ ମଣ୍ଡିତ ଝିଙ୍କୁଅ ଚାମର । ଗୁରୁ ଚନ୍ଦ୍ରା-
ତପମାନ୩ କଲେ ବାହାର । ୨ । ମାଧବୀଲୀ ସୁରଙ୍ଗ ଝିନ ଲୁଗା ଅମ୍ବର୪ ।
ମଣ୍ଡିବାରେ ଅଡ଼ମ୍ବର ଦିଶେ ଅମ୍ବର୫ । ଫୁଲଚଢ଼ ମଧ୍ୟେ ଫୁଲଝୁମ୍ପା
ବଳାଇଛେ । ଅବଲୋକନରେ ମନ ନଥିନ ରଞ୍ଜେ । ଫିଟିଲା ସୁବର୍ଣ୍ଣ-
ପଦ୍ମ ଦିଶନ୍ତି ତୋରା । ତାର ତାରକ୬ ମୁକ୍ତା ମାଣିକ୍ୟ କେରା
କେରା । ୩ । ବଢ଼ନ୍ତି ଚନ୍ଦ୍ରପ୍ରତିମାମାନଙ୍କୁ ଦେଖି । ଚନ୍ଦ୍ର ପ୍ରାୟେ ହୁଏ
ଦେହ ନ ଟଳେ ଅାଖି । ଚନ୍ଦନଜଳ କର୍ପୂରଧୂଳି ଝିଞ୍ଚାଇ । ଅଗୁରୁ
ଧୂପରେ ସୁଶୀତଳ କରାଇ । ବଢ଼େ ବାଟ ଯାକ ଏହୁ ପ୍ରକାରେ
ତୋରା । ମଣି ଧରଣୀ ମସ୍ତକ ମଣ୍ଡିଣି ପରା । ୪ । ଛଇଳନାଗର
ସ୍ନାନ ପୁରୁଷସିଂହ । ଏତେତ ଶୁକ୍ଳ କଳାବନ୍ତ ଅରହ୭ ।
ନୋହିଲେ କହ ସ୍ନାନକୁ ଅରମ୍ଭ ଉଠେ । ମୁଁ କେତେ କହିବ ତୁମ୍ଭେ
ଶୁଣିବ କେତେ । ଶେଷ ନୁହଇ ଅଶେଷ ପରମହଂସ୍ୱେ । ସରଗପଙ୍କ୍ତି
ତରଙ୍ଗ ଗଣିଲା ଯାମ୍ୱେ ୮ । ୫ । ନାନାରୂପ ମହାମଣ୍ଡପକୁ ମଣ୍ଡାଇ ।
ତିନିଲୋକ ଲୋକଙ୍କୁ ଉଚ୍ଚାଟ ଲଗାଇ । ସଜଲାଗି ବଢ଼େ ଗାଢ଼
ପ୍ରହରେ ଥାଉଁ । ସଜ ଆଜ ସାଜ ବୋଲି ବାଛେ ସଜାଉ । ସୁର ନର
ଅସୁର ଗନ୍ଧର୍ବ ବାଦ୍ୟରେ । ସମୁଦ୍ର୮ ଉଛୁଳ ସୁରବର୍ତ୍ତ ମଧ୍ୟ ପୂରେ । ୬ ।
ଅନେକ ଝଲା ଦିହୁଡ଼ି ଚନ୍ଦ୍ରଉଦିଅ । ଚନ୍ଦ୍ରଦୀପ ଲାଗି ଘଟେ
ଚନ୍ଦ୍ରଉଦିଅ । ଅବରୁଦ୍ଧ ଗହଳ ଚହଳ ଅନନ୍ଦ । ଅମ୍ବରେ୧୦ ରହି
ଦେଖନ୍ତି ଅମରବୃନ୍ଦ୧୧ । ଅପସରାମାନେ ନୃତ୍ୟ କରନ୍ତି ମିଳି । ଝଟକ-
ଚଳୁଳ ଅଙ୍ଗମାନଙ୍କୁ ଢାଳି । ୭ । ଅଗୁରୁ ଧୂପ ଧୂମ ଦିଗରେ ବାସେ ।

---

୧ଭୂଷା । ୨ଚନ୍ଦ୍ରଯାତ୍ରା । ୩ଚନ୍ଦ୍ରଅମାନ । ୪ରଙ୍ଗ ଲୁଗା ।
୫ଆକାଶ । ୬ଉଜ୍ଜ୍ୱଳ ନକ୍ଷତ୍ରପର । ୭ପଣ୍ଡିତ୍ୟ । ୮ସମୁଦ୍ର । ୯ଆକାଶ ।
୧୦ଆକାଶରେ । ୧୧ଦେବତାମାନେ ।

Digitized by srujan ka@gmail.com

ସୁଧାବନ୍ଦ ପ୍ରାପ୍ୟେ ସ୍ୱର୍ଗ ପୃଷ୍ଠ ବରଷେ । ଯବଳଛତ୍ର ଉଭୟ ପାଶରେ
ଉଡ଼େ । ଖଡି ଚାମର ଅଳଙ୍କ ଅନେକ ପଡ଼େ । ମହିମା ତାଙ୍କ ବର୍ଣ୍ଣିବା
କ କର ନାହିଁ । ଅଣିମାଦି[1] ମୋକ୍ଷଦାତା ବଳସ୍ୱ ଯନ୍ତ୍ର । ୮ ।
ଜୟ ଜୟ ଶବ୍ଦ ଶୁଭଇ ଅନେକ । ଏକାରୁଣ୍ଡ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ-
ଲୋକ । କେ କେତେ ଗୀତ କବିତ୍ୱ ସ୍ତୁତି କରନ୍ତି । ଅବଲୋକନେ
କଳକଲ୍ମଷ[2] ହରନ୍ତି । ଅଦ୍ଭୁତ ସେ ସିନ୍ଦୂର ଗନ୍ଧ ପାଗ ଚାତୁରୀ ।
ଚାହିଁଲେ ମନଆନନ୍ଦ ଉଠଇ ପୂର । ୯ । ଶ୍ରୀ ବଳଭଦ୍ର ସୁଭଦ୍ରା
ସୁଦରଶନ । ଆଗରେ ଚଳାଇ ପଚ୍ଛେ ଜଗମୋହନ । ଶ୍ରୀକର ପଇଠି
ଦେଇ ଭକ୍ତଙ୍କ ଘରେ । ଲଙ୍ଗିମା ଭଙ୍ଗିମା ହୋଇ ବକ୍ରେ ସ୍ଥିରେ ।
କ ଉପମା ଦେବା ଯନ୍ତ୍ର ବର୍ଣ୍ଣନା ନାହିଁ । କବ ହେଲେ କେଉଁଠାରେ
କାହା ନ କହୁ । ୧୦ । ନାନା କାମନା ଲୋକଙ୍କୁ ଦେବା ଅର୍ଥରେ ।
ବଚନ୍ତ୍ର କଳ୍ପତରୁ କ ଚାହିଁଲେ ପୃଥ୍ୱୀରେ । ଏମନ୍ତ କଳ୍ପନା ଥିବା କର
ହୁଅନ୍ତୁ । ଏବେ ସେ ଅମୃତଫଳ ଦାନ କରନ୍ତୁ । ସଂସାର ଶୋକ
ହରିବା ତହିଁରେ ନାହିଁ । ଏହୁ ଯେନ ଦୃଷ୍ଟିକ ସେ ଅସର
କାହିଁ । ୧୧ । ପୂର୍ଣ୍ଣଚନ୍ଦ୍ରମା ମଧ୍ୟରେ ଖେଳେ କ ଅଛି । ଏ ଅଣ୍ଟୁପ୍ୟ
କଥା କହନ୍ତାଇଁ ଭରସି । ଯେବେ ସେ ଦିବସେ କୋଟି ବାନ୍ଧି ହୁଅନ୍ତା ।
ଅକଳଙ୍କ ସଦା ପୂର୍ଣ୍ଣଭାବ ରହନ୍ତା । ଅଘ[3] ଅନ୍ଧାର ବଳାଣି ହରନ୍ତା
ଦୁଃଖ । କାହିଁ ଚନ୍ଦ୍ର ପରଯନ୍ତ ଦିଅନ୍ତା ସୁଖ । ୧୨ । ଉପମାକୁ ନ
ଆସଇ ପ୍ରଭୁଙ୍କ ତେଜ । କଲେ ଲେଖା ହେବ ଅବବେକ କାର୍ଯ୍ୟ ଜେ ।
ତୁଳରେ ସମାନ ନୋହେ ସକଳ ସୁରେ[4] । ଏଣିତବେଳେ ଦେଖ
ରହୁଛନ୍ତି ଉପରେ । ଅଗତି ଲୋକଙ୍କର ସେହୁ ଗତିର ଗତି । ଧନ୍ୟ
ଧରଣୀ ଭାଗ୍ୟ ତା ଶିରେ ବହନ୍ତି । ୧୩ । ଅଳପ ହସିଲା ହୋଇ
ରଙ୍ଗା ଅଧର । ଅପସରୀ ସେବକମାନଙ୍କ ଉପର । ଅଳପ ବିଶ୍ରାମ
ଯେଉଁଠାରେ କରନ୍ତି । ସବୁ ସୁଖ ସମ୍ପତ୍ତି ସେଠାରେ ପୂରନ୍ତି । ଯେଉଁ-

---

୧ଅଷ୍ଟ ଐଶ୍ୱର୍ଯ୍ୟ । ୨ପାପ । ୩ପାପ । ୪ଦେବତାଏ ।

Digitized by srujan ka@gmail.com

ଅଡ଼େ ପଡ଼ଇ ସେ ଅମୃତଦୃଷ୍ଟି । ସେ ଦିଗେ ବୃଷ୍ଟି ହୁଅଇ ଅମୃତ-ସୃଷ୍ଟି । ୧୪ । ମନ୍ତ୍ରପତ୍ର ପ୍ରାୟେ ବେଦ ପାଶରୁ ଝୁଲି । ମହାଭକ୍ତ-ଭରେ ଧୂରେ ତତ୍ୟଙ୍କୁ ପେଲି । ପୂର୍ଣ୍ଣ ସିଂହ ହକମିଲା ପଗ୍ୟେ ହୋଇ । ମନ୍ଦ ମନ୍ଦ କର ପାଦପଦ୍ମ ପକାଇ । କେତେବେଳେ କହୁବ ସେ ଗ୍ଲଲବା ଗୃହୁଣୀ । ଯେଉଁ ଗୃହୁଣୀରେ ଶେଷ ହୁଏ ଶତଂଣୀ । ୧୫ । ରଜତଗିରକ ଗଜ ଉଠିଲା ପ୍ରାୟେ । ଅଗେହଣ ଅଗେହନ୍ତ ଦେ-ବାଧଗ୍ୟେ । ପ୍ରବେଶ ସ୍ନାନମଣ୍ଡପ ଚନ୍ଦ୍ର ଉପରେ । ସେ ଶୋଭାରୁ ଉପମା ନ ଦିଶେ ସଂସାରେ । ହରହର ବହରେ ଦ୍ଵ କୈଳାସରେ । କେହୁ କେହ ଭାବନ୍ତ ଏମନ୍ତ ମନରେ । ୧୬ । ରଜତପର୍ବତ ଘିଗ-ମର୍କତ ଶୃଙ୍ଗଂ । ମଧ୍ୟରେ ସୁବର୍ଣ୍ଣ ଲତା ହୋଇଛୁ ସଙ୍ଗ । ଏମନ୍ତ ବୋଲିବାକୁ ବଚନ ନ ଆସେ । ଅଲକ୍ଷ୍ୟ୨ ଲକ୍ଷ୍ୟ୩ ଲକ୍ଷଣେ କେତେ-ବେଳେ ସେ । ଅଶେଷ ଶୋଭା ତଳ୍ଳିଁ ମନ୍ତ୍ର ନ ଯାଏ । ଆକାଶେ ଯେମନ୍ତ ବୃଷ୍ଟି ଦୃଷ୍ଟି ନ ପାଏ । ୧୭ । ଏ ସମୟରେ ମେମଂତମୂର୍ତ୍ତ ଚନ୍ଦ୍ର । ଉଦୟ୫ ଶିରେ ଉଦୟ ଗଗନରେନ୍ଦ୍ର୬ । ମାନବେ ମାନସ ସ୍ନାନ କଥାରେ ଦେଇଁ । ସ୍ନାନ କର ଆସନ୍ତ ସେ ଶଭ୍ର୭ ହୋଇ । ଦେଖନ୍ତି ସ୍ନାନମଣ୍ଡପେ ନୀଳାଦ୍ରିଚନ୍ଦ୍ର । ଅରତ ଅଘ ବାରଣ୮ ମନ୍ତ୍ର-ଧାଗନ୍ଦ୍ର୯ । ୧୮ । ଉତ୍ତରଦିଗରେ ଅଛୁ ସୁବର୍ଣ୍ଣକୂପ । ତିନିକୋଟି ପଞ୍ଚାଶଲକ୍ଷ ତୀର୍ଥ ରୂପ । ଯଞ୍ଚ ମଣ୍ଡଳ ବାଜଇ ଅର୍ଦ୍ଧଘଟରେ । ତନ୍ମୁ-ଞ୍ଜଳ ଆସଇ ସୁବର୍ଣ୍ଣପାତ୍ରରେ । ଅଧିବାସ କର ତାହା ଥୁଅନ୍ତ ନେଇଁ । ନୀଳାଦ୍ରିନିବାସ୧୦ ସ୍ନାନ କରିବା ପାଇଁ । ୧୯ । ମନ୍ତ୍ରବଧାନେ ସେ ଜଳେ ସ୍ନାନ କରନ୍ତି । ଧାନବେ ସେ ଜଳ ପାନେ ପାପ ହରନ୍ତି । ପୁଣି ଚହଲ ଚନ୍ଦନ ଜଳ ଗଡ଼ାନ୍ତି । ନୀଃସମୟେ ସସାରସନ୍ଧ୍ୟାପେ ବୃଡ଼ାନ୍ତି ।

---

୧ରଜତପର୍ବତ ପର ଚନ୍ଦ୍ର, ଘ୍ରାଗ ଓ ମର୍କତମଣି ଶୃଙ୍ଗ ପର ବଳରାମ ଓ କୃଷ୍ଣ । ୨ ଅତୁଲ୍ୟ । ୩ତୁଲ୍ୟ । ୪ପଶ୍ଚିମଦିଗ । ୫ଉଦୟଗିରି । ୬ସୂର୍ଯ୍ୟ । ୭ଶୁଭ୍ର । ୮ପାପହନ୍ତା । ୯ମନ୍ତ୍ରସିଂହ । ୧୦ଜଗନ୍ନାଥ ।

Digitized by srujan ka@gmail.com

ସେହିକାଳେ ପ୍ରଭୁଙ୍କର ଯେମନ୍ତ ଶୋଭା । କେଉଁ ଉପମା ତହିଁକ
କହିବା ଅଛା । ୨୦ । ନିର୍ମଳ ଗଗନେ ଉଦେ ଶରଦଘନ । ଗଙ୍ଗା୧
ଯମୁନାଂ ଉପରେ କରେ ଗମନ । ଏମନ୍ତ ବୋଲି ବୋଇଲେ କେଉଁ
ଚଡ଼ାଇ । କେ ଦେଇ ବୃନ୍ଦରୁ ଛିନ୍ଦାଗ ଛଡ଼ାଇ । କତ ବଦନ
ଶୁଭୁଛି ରଖିବା ପାଇଁ । ଅଲକ୍ଷ୍ୟ କଥାରେ ଲକ୍ଷ୍ୟ କରଇ କେଇ । ୨୧
କେ ବୋଲେ ଶ୍ରୀପଦେ ପଦ୍ମାକରଙ୍କୁ୨ ମନ୍ତ୍ରି । ବାହାର ହୋଇଲେ
ଯେସନେ ଦିଶନ୍ତି ହସ୍ତୀ । ଏହିରୂପେ ନାନା କଥାମାନ କହନ୍ତି । ଘଚ-
ଘାଘି ନାଥ ତା ଘବରେ ବହନ୍ତି । କନ୍ଦର୍ପ ଦର୍ପ ହରଇ ଯେଉଁ
ଶୁଭୁଛି । କେ ଯଣ ପାଇବ ତହିଁ ଉପମା କରୁ । ୨୨ । ସ୍ନାନ ବଢ଼ାଇ
ପ୍ରଭୁ ହୁଅନ୍ତି ସୁବେଶ । ଲାଗି ହୋଇକର ଝୀନପଟନ ବାସ ।
ଶ୍ରୀଭୁଜେ ଗଉଁଛି ଦିବ୍ୟ ଜାଳମ୍ବା କେତ । ପଉହରଣ ପଠନ୍ତ
ମୋହେ ଜଗତ । ଧୂଲମାଳ ଚୂଳ କରଗତ ଅଳକା । ଗୁହିଁଲେ
ଛଡ଼ାଇ-ଭବବନ୍ଧନ ଦକା । ୨୩ । ଏହିରୂପେ ଘଇ ବଳଭଦ୍ରଙ୍କ
ବେଶ । ଫୁଲମାଳମାନଙ୍କେ ଶ୍ରୀଅଙ୍ଗ ଅଦୃଶ୍ୟ । ବେନି ପାରୁଶରେ
ବୀରଛତ୍ର ଉଡ଼ନ୍ତି । କହି ନୁହଇ ସେକାଳ ଶୋଭାସମ୍ପତ୍ତି ।
ମହାଭୀଡ଼ ସକଳ ଲୋକ ଜନାଜନ୍ତି । ବେନି ପାରୁଶରେ ଚ୍ଛଣଚ-
ଛତ୍ର ଉଡ଼ନ୍ତି । ୨୪ । ଗୀତ ବାଦ୍ୟ ନୃତ୍ୟ ଜୟ ଜୟ ଶବଦ । ବ୍ରହ୍ମ
ଦେବତାମାନଙ୍କ ଜଗମପଦ୍ମ । ଶଙ୍କର କହିବାର ସାଧୁ କୀର୍ତ୍ତନେ ।
ଏକ ହୋଇ ସବୁ ଧ୍ୱନି ପୂରେ ଗଗନେ । କେ ଚନ୍ଦନ ଜଳମାନ
ଧରି ବସନେ । ଧର ଧର ବୋଲିଣ ଦ୍ୟନ୍ତି ହରମାନେ । ୨୫ ।
ମଣୋହି ବିଢ଼ାଇ ପ୍ରଭୁ ଜଗତେଶ୍ୱର । ବାହୁଡ଼ାବିଜୟ କରିବାକୁ
ବଶ୍ୱର । ବଳଦେବଠାକୁରଙ୍କୁ ଅଗରୁ କରି । ପଛ ପଟୋଆସ୍ତି
ନୀଳଗିରିବହାସି । ଦକ୍ଷିଣମୂରତି ବନ୍ଧାପନା ହୁଅନ୍ତି । ଦେଖିଲା

---

୧ଗଙ୍ଗା ଜଳ ଶୁକ୍ଳ, ଯମୁନା ଜଳ କଳା । ୨ପଦ୍ମଯୋଷଣା ।
୩ବେଦଶାସ୍ତ୍ରାଦିର ପଦ ।

Digitized by srujan ka@gmail.com

ଲୋକଙ୍କୁ ଚଉବର୍ଗ ଦିଅନ୍ତି । ୨୬ । ନୀଳାଦ୍ରି ନବରେ ଯାଇ ପ୍ରବେଶ ହୋଇ । ଦଶ ପାଞ୍ଚ ଦିନ ଦରଶନ୍ନ ନ ଦେଇ । ଜନ ନୟନ ଉତ୍ସବ କରିବା ପାଇଁ । ନେତ୍ରଉତ୍ସବ ଯାତ୍ରା କରନ୍ତି ଗୋସାଇଁ । ରଥ ଉପରେ ଚଢ଼ିଣ ନେତ୍ରାଳଙ୍କାର । ଯାହା ଦର୍ଶନ କରନ୍ତି ବ୍ରହ୍ମାଦି ସୁର । ୨୭ । ଶରଧା ଯେବେ କରବ ଜହଇ ତାହା । ମହାପାପ ନଷ୍ଟ ଯାଇ ସୁମତି ଯାହା । ବ୍ରହ୍ମହତ୍ୟା ଦୂରେ ଯେଉଁ ରଥର ଥାଇ । ଯେଉଁ ରଥ ଛୁଇଁ ମହାପବିତ୍ର ହୋଇ । ଶ୍ରୀଗୁଣ୍ଡିଚ୍ଚ ବୋଲି ଭକ୍ତେ କୀର୍ତ୍ତନ କଲେ । ସମସ୍ତ ବେଦନାମାନ ଛୁଟିଇ ଭଲେ । ୨୮ । ରଥେ ବଜେ କରିଥିବେ ଜଗଦୀଶ୍ୱର । ସେ ଯାଇ ପ୍ରତିବିମ୍ବିବ ଯେଉଁ ଜଳର । ସେ ଜଳସ୍ଥାନରେ ଯେତେ ପ୍ରାଣୀ ନ୍ହଥଇ । କ କରିବ ଗଙ୍ଗା ଗମ୍ଭୁ ସାଗର ଯାଇ । ଶ୍ରୀଗୁଣ୍ଡିଚ୍ଚ ଶ୍ରୀଗୁଣ୍ଡିଚ୍ଚ ବୋଲ ହେ ଜନେ । ଶ୍ରୀଗୁଣ୍ଡିଚ୍ଚ ଦୀନକୃଷ୍ଣ ଗାଏ ବଚନେ । ୨୯ ।

---

## ନବମ ଛାନ୍ଦ ।

ରାଗ ପାହାଡିଅକେଦାର । ନାଳ ଶ୍ରୋ ।

ଏବେ କହିବା ଶୁଣ ହେ ଜନେ ଏକଚାନରେ ଅନନ୍ଦମନେ ଶ୍ରୀଜଗନ୍ନାଥଦେବଙ୍କଙ୍କ ଗୁଣ୍ଡିଚ୍ଚ କଥା ହେ । କର୍ଣ୍ଣପଥରୁ ଅମୃତମୟ ଅଶେଷ ପାପ କରବ କ୍ଷୟ ଛଡ଼ାଇ ମହାଦୁଃସହ ଭବବନ୍ଧନ ବ୍ୟଥା ହେ । ନାନା ଉତ୍ସବରୁ ସେ ଉତ୍ସବ ସାର ହେ । ତିନଲୋକଙ୍କ ନେତ୍ର ସୁଖଲକାର ହେ । ବରଷା ଅଗମରେ ସେ ଲୀଳା କରନ୍ତି

---

୧ କମ୍ବୁନଭୂଷଣ ।

Digitized by srujan ka@gmail.com

ଭବସାଗରେ[1] ଭେଳା କମଳମୁଖୀ-କମଳା-କର୍ଣ୍ଣ-ମର୍କଟଦ୍ୱାର[2] ହେ ॥ ଯହିଁ ଆଷାଢ଼ମାସ ପ୍ରବେଶ ହୁଅନ୍ତେ ଘନ ଘୋର ଅକାଶ ଗିରିମସ୍ତକ ଗିଳି କରଇ ଗମ୍ଭୀର ଘୋଷ ହେ । ମେଘ ପୁଷ୍କରେ[3] ମେଦିନୀ ଦେଶ ଉପରେ ନାଶି କିରେ ସୁବାସ, କୃଷିକାରଙ୍କ ଅତି ମାନସ କରେ ଉଲ୍ଲାସ ହେ । ମଣ୍ଡୂକ[4] ମୁଖନ୍ତି ମଙ୍ଗଳସ୍ୱର ହେ । ମନ୍ଦା ଉଚ୍ଚେ ଗର୍ଜନ କରନ୍ତି ଘନ ହେ । ମାନସରକୁ ଗମନ୍ତି ହଂସେ ମଧ୍ୟରେ ଇନ୍ଦ୍ରଗୋପ[5] ବକାଶେ ମାଣିକ୍ୟ ମଣ୍ଡି ହୋଇଲା ପ୍ରାୟେ ସୁନ୍ଦର ସ୍ଥଳ ହେ । ୨ । ଫୁଟନ୍ତି କୁରୁବକର ଫୁଲ[6] ଫୁଲବକ୍ଷିଶ[7] ଭ୍ରମର ଭୁଲି ଫୁଲ୍ଲାରବିନ୍ଦମୁଖୀ[8] ଧରନ୍ତ କାଳେ ଯେ ଧଳ ହେ । ଯେଉଁ ଋତୁରେ ଅତ୍ୟନ୍ତ ଭଲ ହୋଇ ବଢଇ ଦମ୍ପତି[9] ଗେଲ ଏକାକୀ ଲୋକମାନଙ୍କୁ ହୁଏ କନ୍ଦର୍ପଶେଲ[10] ହେ । କାମୀ କାମିନୀ ଯହିଁ ଦେଖିଲେ ଅଚେତ ହେ । ଭେଗ କରନ୍ତି କାମ-କୃପାଣ[11] ଗେନ୍ତ ହେ । ଦିନେ ଅନ୍ଧାର ହୋଏ ଯଉଠି ଅନ୍ଧକାରେ ପଡ଼େ ସଙ୍କଟ ଅରତ ହୋଇ ବୋଲନ୍ତି ରକ୍ଷ ଚନ୍ଦ୍ରମୁକୁଟ[12] ହେ । ୩ । ଅତି ବିକଟ ଜାହ୍ନବ ଟେ ଯେଉଁ କାଳରେ ହୁଏ ଉତ୍କଟ କେକୀ[13] କେକିନୀ[14] ମଣ୍ଡଳ ମଧ୍ୟେ କରନ୍ତି ନାଟ ହେ । ଅଗାଧ ବାଟ ହୁଏ ଅବଟ[15] ହୁଏ ଅଚ୍ଛନ୍ନ ହୁଏ କୃପୀଟ[16] ତଟିନୀ ଜଳ[17] ପ୍ରବଳ ହୋଇ ଚଳନ୍ତି ତଟ ହେ । ନାହିଁ ଯୋଜନ ନାବକେ ଛଗନ୍ତି ଛଠ ହେ । ପଥିକଙ୍କ ଗମନ ହୁଅଇ ମଠ ହେ । ସବୁ ଅନ୍ତରେ କମଳମଧ୍ୟେ[18] ପଦ୍ମ କୁମୁଦ ଅଦୃଶ୍ୟ ହୁଏ ସ୍ଥଳେ

---

୧ସଂସାରସମୁଦ୍ରରେ । ୨ଲକ୍ଷ୍ମୀଙ୍କର କର୍ଣ୍ଣ ମର୍କଟଦ୍ୱାର ସଦୃଶ ଜଗନ୍ନାଥ । ୩ ଜଳରେ । ୪ ଭେକ । ୫ବର୍ଷାକାଳୀନ ସୁରଙ୍ଗ ପୋକ ବିଶେଷ । ୬କାଶଫୁଲ । ୭କାମ । ୮ପ୍ରଫୁଟିତପଦ୍ମମୁଖୀ ସ୍ତ୍ରୀ । ୯ଭାର୍ଯ୍ୟାପତି । ୧୦ଶୂଳ । ୧୧କନ୍ଦର୍ପଖଡ୍ଗ । ୧୨ଶିବ । ୧୩ମୟୂର । ୧୪ମୟୂରୀ । ୧୫ଗର୍ତ୍ତ । ୧୬ବନ । ୧୭ନଦୀଜଳ । ୧୮ଜଳମଧ୍ୟେ ।

Digitized by srujan ka@gmail.com

କମଳ କମଳାଦିଂ ପୂରେ ପଇଠ ହେ । ୪ । ପ୍ରତି କେଦାରେ କନ୍ଦର୍ପ ଭୂର ପ୍ରାଣେ ଶୁଭଇ ଷଡ଼ଜସ୍ୱର[୨] ଋଷଭ[୩] ଧଇବତ[୪] ମଧ୍ୟମ ତୁଢନ ସ୍ୱର ଯୋଗ ହେ । ଶୁଣି ପଥିକେ ଭୟେ ଅଥିର ଅସନ୍ତ ଯେ ଯାହାର ମନ୍ଦିର ପଶନ୍ତି ପ୍ରିୟା ସଙ୍କଟ ଲୁଚଟିଲ କନ୍ଦର ହେ । ତ୍ରିଯନ୍ତ୍ର ବୃକ୍ଷରୁ ଲତା ନୂଅନ୍ତ ଅନ୍ତରଂ ହେ । ପକ୍ଷୀଜୀବମାନେ ଯେ କରନ୍ତି ଘର ହେ । ମକରଧ୍ୱଜ[୫] ବନ୍ଧନପୁର ଭୋଗ କରନ୍ତି ଉତ୍ତମ ନର ବଧୂଭାତୃଗାମାନଙ୍କୁ ଯେଉଁ ବିରଷା ସଲ ହେ । ୫ । ମସ୍ତୀ ମାଳତୀ ଜାତି କନ୍ଦଳୀ[୬] ଲୁଠକ[୭] ଆଦି କଦମ୍ବେ କେଳି କରନ୍ତି ଯେଉଁ ସମୟେ ଭୃଙ୍ଗକୁନ୍ଦମେ[୮] ମିଳ ହେ । ଆମ୍ବ ଅଧରଦ୍ୱାସରୁ ବଳ ଫୁଟନ୍ତି ଯହିଁ ଗଙ୍ଗଶିଉଳି ଯହିଁ ଅନଙ୍ଗ ଶରଧି ଅଙ୍ଗ ଦିଅଇ ଜାଳ ହେ । ଏହୁ ପ୍ରକାରେ କେତେ କହିବା ଶ୍ରାନ୍ତ ହେ । ପ୍ରସଙ୍ଗକୁ ମୁଁ ଏତେ କହନ୍ତି ଛନ୍ଦ ହେ । ପଥିକ ରସ ଣିତାକୁ ଭଳ ରଖିଲ ଋତୁ ବର୍ଣ୍ଣନାବଳୀ ଯେଣ କର ସେ ସମସ୍ତ ଲୋକ ସୁଖସଙ୍ଗ ହେ । ୬ । ଏମନ୍ତ ଯେଉଁ ଆଷାଢ଼ମାସ ଶୁକ୍ଳ ଦ୍ୱିତୀୟା ତିଥି ଦିବସ ପୁଷ୍ୟା ନକ୍ଷତ୍ର ସହିତେ ହୋଇଥାଇ ପ୍ରବେଶ ଯେ । ସେହି କାଳରେ ଦେବନରେନ୍ଦ୍ର ମହାକରୁଣ[୯] କୃପାରେ ଚନ୍ଦ୍ର ଅରତ ଘୋର-ଅନ୍ଧାର-ଚନ୍ଦ୍ର ବଳେ ପ୍ରକାଶ ହେ । ପ୍ରାତଃ ମନୋହର ସ୍ୱାତ ବାହାର ହୋଇ ହେ । ବୀର ବେଶରେ ବୀରଛତ୍ର ଧରାଇ ହେ । ବାଜଇ ବୀରବାଦ୍ୟ ଅନେକ ଘଣ୍ଟ ମର୍ଦ୍ଦଳ ମେଘା ଡମ୍ବ ପଡ଼ିଲ ଭିନ୍ନପୁରେ ଚମକ ଦର୍ଶନ ପାଇଁ ଯେ । ୭ । ଶଙ୍ଖ ମହୁରୀ ବୀରକାହାଳୀ କେ ଜୟ ଜୟ କେ ହୁଳହୁଳୀ ମଙ୍ଗଳଗୀତ ମଙ୍ଗଳପାଠ ନୃତ୍ୟ କଇଲ ହେଁ । ମଣିମା ତାକ ଅନେକ ଘଣ୍ଟ ଅନେକ ବର୍ଣ୍ଣେ ପତାକା ଉଡ଼େ ଗନ୍ଧୀ

---

୧ଜଗନ୍ନାଥ, ବନ୍ଧୁ । ୨ମଧୁର ସ୍ୱର । ୩ବୃଷଭସ୍ୱର । ୪ଭେକସ୍ୱର । ୫ମକରାକୃତି ପତାକା । ୬ସମୃଦ୍ଧ ବା କଡ଼ୀ । ୭ଗିରିମଲ୍ଲୀ । ୮ଭ୍ରମରମାନେ । ୯ପରଦୁଃଖକାତର ।

Digitized by srujan ka@gmail.com

ଗୁମ୍ଫତ ତଳେ ସମ୍ଭ୍ରାଲଙ୍କାର ବନ୍ଧ ହେ । ଅନ୍ତରରେ ଅଗୁରୁ ଧୂପର
ବାସେ ହେ । ଆକାଶରୁ ସୁବାସ ଫୁଲ ବରଷେ ହେ । ଅଷ୍ଟ ଆକାଶେ
ଅମରେ ରହି ଅଶ୍ରୁପୁଲକେ ଆନନ୍ଦେ ଯହିଁ ଅନେକ ସ୍ତୁତି କରନ୍ତି
ଭକ୍ତିଭାବେ ସନ୍ତୋଷେ ହେ । ୯ । ଏମନ୍ତେ ବନ୍ଦେ କରନ୍ତି ଧୀରେ
ଶ୍ରୀଭୁଜ ଦେଇ ଭୃତ୍ୟଙ୍କ ପରେ ଅଳପ ହସି ବେନ ପାଶକୁ ଚାହିଁ ଗୃ-
ହାନ୍ତି ସେ । ଅମୃତଦୃଷ୍ଟି ପଡ଼ିବା ମାତ୍ରେ ଉତ୍ତମାଧମ ମଧ୍ୟମ ପାତ୍ରେ
ଧର୍ମାର୍ଥ କାମ ମୋକ୍ଷ ଚତୁରବର୍ଗ ପାଆନ୍ତି ସେ । କୃପାକର[୧] କରୁଣା
କର ବିସ୍ତାର ହେ । କେତେ ଲୋକଙ୍କୁ ଦେଖି କର ନମସ୍କାର ହେ ।
ବଳଦେବଙ୍କ ଅଗ୍ରେ ବର ହିନ୍ଦୁଳି ଗନ୍ତାପାଶକୁ ଧର ନୀଳାଦ୍ରି-
ନଗରକୁ ବାହାର ଜଗତଗଣ୍ଡୁର ହେ ॥ ସ୍ନେହଭାବରୁ ସୁଭଦ୍ରା ସଙ୍ଗେ
ସୁଦରଶନ ବିଜୟ ରଙ୍ଗେ ମଦନଗୋପାଳଙ୍କୁ ଯୋଜଣ ବିଜୟ ଗିଁଥେ
ହେ । ସେକାଳେ ଯେଉଁ ଶୋଭାସମ୍ପତ୍ତି କାହାରୁ କଥନୀୟ ନୁହନ୍ତି
ସେହି ଜାଣନ୍ତି ଯେ ଦେଖିଛନ୍ତି ନ ଯାନପଥେ ହେ । କେ କହିବ ସେ
ରଥ ମଣ୍ଡଣି ଶୋଭା ହେ । ଝଲ ଝଲ ଝଲକେ ଦର୍ପଣପ୍ରାୟ ହେ ।
ସରୁ ସୁନ୍ଦର ହିନ୍ଦୁଳିପାଟପାଟପଟନୀ ନେତ୍ର ପ୍ରକଟ ଗୁରୁ ଗୁମ୍ଫର
ଫୁଲମାଳାରେ ନୟନ ଲୋଭା ହେ । ୧୦ । ସୁବର୍ଣ୍ଣ ଘଣ୍ଟି ଯାଗୁଡ଼ିମାନ
ବିବିଧ ମଣିଗଣେ ମଞ୍ଜୁଳ[୨] ରତ୍ନକଳସ ଉପରେ ଶୋଭେ ଚଗନ୍ନ ଦେଖୁ
ହେ । ନନ୍ଦନାଗର[୩] ହସ୍ତବନ୍ଧାଇ ପ୍ରାୟେ ବିବିଧ ଗଢିରୁ ସ୍ୱାର୍ଥ ଗନ୍ଧ-
ବନ୍ଧନ ନାମରୁ ନାନାପ୍ରକାରେ ବନ୍ଧ ହେ । ଯେଉଁ ରଥରେ ବସନ୍ତେ
ଦେବାଧିଦେବ[୪] ହେ । ତହିଁ ଶୋଭା କେ ବଚନରେ କହିବ ହେ ।
ଦଶଚତୁର ଲୋକ ଉପମା ନାହିଁ ତହିଁରେ ସେ ସୁଖସୀମା ନୋହିଲେ
କପା ତ୍ରୈଲୋକ୍ୟମୋହନକୁ ବହନ୍ତ ହେ । ୧୧ । ଧନ୍ୟ ସେ ରଥ
ଧନ୍ୟ ସେ ପଥ ଯହିଁ ବିଜୟ ଶ୍ରୀଜଗନ୍ନାଥ ଧନ୍ୟ ଜନଙ୍କ ନୟନ
ଧନ୍ୟ ଗୁଣ୍ଡିଚା ଠେକ ହେ । ଯହିଁକି ନାନାଦେଶରୁ ଲୋକ ଆସନ୍ତି

---

୧ ଦୟାମୟ । ୨ ସୁନ୍ଦର । ୩ ରସିକ-ନାଟୁଆ । ୪ ଜଗନ୍ନାଥ ।

Digitized by srujan ka@gmail.com

ହୋଇ ମହାଉତ୍ସୁକ ଅନବରତେ ଉଚ୍ଚାର ହର ମହିମା-ଗାନ ହେ । ଅଙ୍ଗ ବଙ୍ଗ କଳିଙ୍ଗ ମଗଧ କାଶୀ ହେ । ନଟ ଲାଟ କର୍ଣ୍ଣାଟ ଗଉଡ଼-ଦେଶୀ ହେ । କନୌଜ କାମରୂପ ନେପାଳ କେରଳ କୁରୁକ୍ଷେତ୍ର କୁନ୍ତଳ ସିନ୍ଧୁ ମାଲବ୍ୟ ଶୈଳ ପଞ୍ଚାଳ ସିଂହଳବାସୀ ହେ ।୧୨। ସୌରାଷ୍ଟ୍ର ମହାରାଷ୍ଟ୍ର ଅବନ୍ତୀ ଏ ଆଦି ନାନାଦେଶୁ ଆସନ୍ତି ବିବିଧ ଯାନମାନ ଆରୋହି କେ ପାଦଗତି ହେ । କେତେ ନୃପତି କେତେ ସମ୍ପତ୍ତି ଘେନି ଆସନ୍ତି ନ ପାଇ ଖ୍ୟାତି ନଦୀ ସମୁଦ୍ର ପଣିଲ୍ଲ ପ୍ରାନ୍ତେ କ୍ଷେତ୍ର ପଶନ୍ତି ହେ । କେହି ଠାନ୍ତି ଠମାଳ ହରଷରଙ୍ଗେ ହେ । କେହି ଜଗମୋହନ କଥାପ୍ରସଙ୍ଗେ ହେ । ଯୁବା ଯୁବତୀ ଯତି ସନ୍ନ୍ୟାସୀ ସାଧୁ ଦୁର୍ଜନ ପଣ୍ଡିତ ମିଶି ଶୈର ସାଧବ ଅଗ୍ରବନ୍ତ ଶୁଣ୍ଡ୍ରାଙ୍କ ସଙ୍ଗ ହେ ।୧୩। ଏରୂପେ ନାନାମାର୍ଗେ ଆସନ୍ତେ ଠାବଠାବକେ ରହନ୍ତି ଶ୍ରାନ୍ତେ କେଉଁ ଯୁବତୀ ବୋଲଇ କାନ୍ତେ ନିଷ୍ଠୁରେ ଗୃହୁଁ ହେ । ଘିହାରେ ମୋର ଶକତି ନାହିଁ ଅଗରେ ଦଣ୍ଡେ ଯିବାକୁ ରହି ଶୁଣି ନାୟକ ହୋଲଇ ହେଉ ପରାଣସହି ରେ । କେଉଁ ଯୁବତୀ ଅତି ଜଗମ୍ବଡ଼ୀ ହେ । କାନ୍ତ କର ଧର ସେ କରଇ ଗତି ହେ । ବୋଲନ୍ତି କେତେ ଦୂରରେ କ୍ଷେତ୍ର କାହିଁ ହେବେକ କମଳନେତ୍ର ହେଲାଣି ଥକି ବୋଲନ୍ତେ ହୁଏ ହରଷମତି ସେ ॥ ଭ୍ରମେ ପ୍ରେମରେ କାନ୍ତକୁ ଶୁଦ୍ଧି କେଉଁ ସୁନ୍ଦରୀ ବୋଲଇ ରହ ଶୃଙ୍ଖଳାକୁତ ଚରଣ ମୋର ଟଳଇ ନାହିଁ ହେ । ଏଠାରୁ ମୋତେ ନେବ କି ବହି ଶୁଣି ନାୟକ ବୋଲଇ କେହି ନ ଥିଲେ କେଉଁ ଚିତ୍ତ ଏ କଥା କମଳମୁଖି ରେ । ଭ୍ରମରରୁ ଇଷି ଇଷି କେ ହସି ହେ । ନାସା ତୋଳ ପାଦପତଳରେ ବସି ଯେ । ଝଲକ ଚନ୍ଦ୍ର ମୁହଁ ହଲାଇ ହସି କାନ୍ତକୁ କହେ ଗେଲ୍ହାନ୍ତ ମହାପ୍ରଭୁଙ୍କ ଯାତ୍ରାଫଳହିଁ ଦିଶିଲା ଆସେ ଯେ ।୧୫। ଶୁଣି ଦୟିତ ବୋଲେ ଏ ସତ କହିଲ ଯେଉଁ କଥା ଉଚିତ କ୍ଲେଶ ନୋହିଲେ କ୍ଷେପ[୧] ନୁହଇ ଫଳ ପାଇବା ଗୋ । ସୁମନା[୨] ହୋଇ ବମନା

୧ ସଂଯୋଗ । ୨ ସ୍ତ୍ରୀ ଏବଂ ଉତ୍ତମ ସଙ୍ଗର ଲୋକ ।

Digitized by srujan ka@gmail.com

ହେଲେ ଅସ୍ତୁଦଗିହଁ ଦିଶଇ ଭଲେ ଭୁମ୍ଭେ ଭବେଶ ତନ୍ତୁଁ ଅଧିକ କେତେ କହିବ ଗୋ । ଏହା ଶୁଣି ହସିଲା ହରଣଦୃଶା ଯେ । ହାତେ ହାତକୁ ମାର କଲା ପ୍ରଶଂସା ଟୁଯେ । ପୁରୁଷୋତ୍ତମ କଥାକୁ ଛଳ କହି ଥିଲତ ପଣ୍ଡିଲ ବଳ ନୋହିଲେ ମୋର ଭୁମ୍ଭଙ୍କୁ ହୋଇଥିଲା ଛମପଂ୧ ହେ । ୧୬ । ପ୍ରେମଛଳରେ ଯେଉଁ ବଚନ କହି କହିଲେ ସେହି ମିଥୁନ୨ ବଗୃହ ବୁଝି ଭାବିଲେ ଏ କଥାହିଁ ସେ କଥା ହେ । ତାହା କେତେହେଁ କହିବ ବସି ଯେ କାମସିନ୍ଧୁ ଲହରୀଗଣି କହି ବସିଲେ ସହଜେ ସେତ ହୋଇବ ପୋଥା ହେ । ତୁଳଉଁ ଯୁବତୀ ଧର କାନ୍ତ ପଣକ୍ତ ଯେ । ମନେ ଘେନ ତେ ଏହୁ କଥା ସମସ୍ତ ହେ । ଏହୁ ବରଷାକାଳରେ ଅତି ପ୍ରିୟବାଦିନୀ ସୁଗୁଣବତୀ ପ୍ରିୟାକୁ ଛାଡି ବଞ୍ଚେ କେଉଁ କମଳାକାନ୍ତ ହେ । ୧୭ । କେଉଁ ନାଗରୀ ମଦନ-ମନ୍ତ୍ରେ ନାଗର ଅଙ୍ଗେ ଲଗିଛି ଭଚଛେ ଏକାକୀ ହୋଇ ଥଇଲେ ଚଳ ଭୁମ୍ଭେ ଯେ ସୁଖେ ହେ । ଅଳିଗଣିରେ ରହିଲେ ଏଥା ପାଅନ୍ତ ସିନା ଅନେକ ଦକ ଭୁମ୍ଭ ସକାଶୁଁ ମୁହିଁ ମରନ୍ତି ସନ୍ତାପ ଦୁଃଖେ ହେ । ଯାତ୍ରାକାଳେ ନାଶିକୁ ଛାଡିଲେ ନାହା ହେ । ଆଉ ଅଛି କି କେହି ହେବାକୁ ସାହା ହେ । ଆଗ ବେଳରେ ବୃଦ୍ଧ ଭୁମ୍ଭର ହୋଇ ନ ଥିଲା ଏତେ ନଷ୍ଟ ର ଏବେ ଏ ଦେବରାଜଙ୍କଠାରୁ ଶିଖିଲ ଏହା ହେ । ୧୮ । ନର ବନ୍ଧୁର ଗନ୍ଧବ ଆଗ ଆଦି ବନ୍ଧ ଯନ୍ତ୍ରୀ ବଜତ ୧ ହାବଭାବାଦିକ ବନ୍ଧ ଅଳଙ୍କାର ଦେଖାଇ ହେ । ଅସମେନ୍ତ ସୁଖେ ଷେତ୍ରବରକୁ ପଞ୍ଚବର୍ଣ୍ଣ୪ ପିଞ୍ଜରକୁ କାର୍ଯ୍ୟ ଦେ ଶକ୍ତି ଜନମାନଙ୍କ ଅଙ୍ଗ ଯୋଷଇ ହେ । ଜଗବନ୍ଧୁ ଦର୍ଶନେ ସବୁ ଛାଡନ୍ତି ହେ । ପରମା-ନନ୍ଦ ସୁଖ ଭବେ ଜଡନ୍ତି ହେ । ଶ୍ରୀ ଜୟ ଜୟ ଶ୍ରୀ ଜଗନ୍ନାଥ ଜୟ ଜୟ ଶ୍ରୀ ଲଙ୍ଗଳହସ୍ତ ଜୟ ସୁଭଦ୍ରା ବୋଲି ମସ୍ତକେ କର ଯୋଡନ୍ତି ହେ ॥ ଜୟ କମଳପତ୍ରଲୋଚନ ଜୟ କଳୁଷ୫ କଷ୍ଟ ମୋଚନ ଜୟ କମଳା

---

୧ ପରସ୍ପରାର୍ଥ ପ୍ରଶ୍ନ । ୨ ଦୁନ୍ଦ୍ୱ । ୩ ଅଙ୍ଗଭଙ୍ଗୀ ପ୍ରଭୃତି । ୪ କନ୍ଦର୍ପ । ୫ ପାପ ।

Digitized by srujan ka@gmail.com

ମୁଖକମଳ ମଉଁଭ୍ରମର ହେ । କମ୍ବୁକଣ୍ଠକ ନୀଳରବିର କୃପାସମୁଦ୍ର
କୈବଲ୍ୟ କର କୌସ୍ତୁଭ ପ୍ରିୟ କଉମୋଦକୀ୧ ରଥାଙ୍ଗଧର୨ ହେ ।
ତ୍ରିଭୁ କୋଟି ବ୍ରହ୍ମାଣ୍ଡ ପ୍ରତିପାଳକ ହେ । ପଞ୍ଚଜନ୍ୟ୩ ନନ୍ଦାର୪ ପଦ୍ମ-
ଧାରକ ହେ । ପଞ୍ଚଜନଙ୍କ୫ ପାରିଜାତଙ୍କ୬ ପରମାନନ୍ଦ ସୁଖଦାୟକ
ଜୟ ଜୟ ଶ୍ରୀଗୁଣ୍ଡିଚା କଉତୁକୀ ନାୟକ ହେ । ୨୦ । ଏହି ପ୍ରକାରେ
ଯେ ଯେତେ ସ୍ତୁତି କରି ଦର୍ଶନ ସୁଖେ କରନ୍ତି କଳି କଳୁଷ ସନ୍ତାପ ସଦା-
ଗଣ୍ଡୁ୭ ହରନ୍ତି ସେ । କଦମ୍ବଫୁଲ ପ୍ରାୟେକ ଅଙ୍ଗ ବିଶେଷ ପୁଲକ ହେବାରୁ
ସଙ୍ଗ ଛର ସମାନେ ନେତ୍ରୁ ଆନନ୍ଦ-ଅଶ୍ରୁ ଝରନ୍ତି ହେ । ଭକ୍ତିଭାବରେ
କେଉଁ ଭକ୍ତେ ଗାଉନ୍ତି ହେ । ଭାବେ ଭଙ୍ଗିମା ହୋଇ କେହୁ ନାଚନ୍ତି
ହେ । ଗ୍ରାହ୍ୟ ଭିତରୁ ବାହାର ହୋଇ ଭବଭୟକୁ ଦୂରେ ପକାଇ
କେ ଭକ୍ତ-ବନ୍ଧୁ କରୁଣାସିନ୍ଧୁ ଶୋଭା ଭାବନ୍ତି ହେ । ୨୧ । ଏହି ମତରେ
କେ କେତେଠାରେ ନାନାଭାବରେ ଦର୍ଶନ କରେ କେ ଦଣ୍ଡବତ କେ
ପରିକ୍ରମା କରନ୍ତି ତହିଁ ହେ । କେହୁ କହୁଛେ ନେତ୍ରକମଳେ ନେତ୍ର
ନବେଣି ମୁଖକମଳେ ଅପଲକରେ ଚନ୍ଦ୍ରଛଟିମା ପଶ୍ଚାତ୍ୟ ରହୁ
ହେ । ଅତି ବଳବନ୍ତ କେ ପଣି ଗହଳେ ହେ । ରଥ ଛୁଇଁ ବିଶ୍ରାମ
କରନ୍ତି ତଳେ ହେ । ମହାପାତକମାନଙ୍କୁ ନାଶି ମହାଆନନ୍ଦ ସୁଖରେ
ତୋଷି ହୋଇ ପରମପଦ ପଦବି୮ ପାଇବା ଛଳେ ହେ । ୨୨ । କେ
ନିଜ ପ୍ରାଣପ୍ରିୟଙ୍କୁ ସଙ୍ଗେ ଘେନି ଦର୍ଶନ କରନ୍ତି ରଙ୍ଗେ କର ନବେଣି
ଉତ୍ତମଅଙ୍ଗେ୯ ବୋଲେ ଯୁବତୀ ହେ । କେ ବଳଭଦ୍ର କେ ଜଗନ୍ନାଥ
କେ ଭଦ୍ରା ମୋତେ ଲୁଚ ହେ ନାଥ କାହାର କେଉଁ ରଥରେ କେଉଁ
ତତ୍ତ୍ୱ ବହନ୍ତି ହେ । ଏହା ଶୁଣି ନାୟକ ବୋଲଇ ସଖି ରେ । ଏହୁ
ସମ୍ମୁଖେ ରହିଁ ଚାହିଁ ସୁମୁଖି ରେ । ଅତି ବିପୁଳ୧୦ ପ୍ରଳମ୍ବ୧୧ ହାତ
ଦେବରାଜ ଏ ଶ୍ରୀ ଜଗନ୍ନାଥ ପ୍ରଭୁଙ୍କ ପଦ୍ମ ପ୍ରାୟେ ବସ୍ତ୍ର ଯାହାଙ୍କ

---

୧ ବିଷ୍ଣୁଙ୍କ ଗଦା । ୨ ଚକ୍ର । ୩ ବିଷ୍ଣୁଙ୍କ ଶଙ୍ଖ । ୪ ଖଡ୍ଗ ।
୫ ଲୋକମାନଙ୍କ । ୬ କଳ୍ପବୃକ୍ଷ । ୭ ସମୁଦ୍ରକୁ । ୮ ମୁକ୍ତିପଥ ।
୯ ମସ୍ତକରେ । ୧୦ ମୋଟ । ୧୧ ଲମ୍ବ ।

Digitized by srujan ka@gmail.com

ଅଖି ରେ । ୨୩ । ମର୍କତମଣି ଦର୍ପଣ ଜିଣି ଶ୍ରୀମୁଖ ଦେଖ ଦେଖ ଚମଣି ମକରାକୃତି କୁଣ୍ଡଳ ଝଟକଇ ଗଣ୍ଡରେ ଯେ । ଶିରେ ସପତ-ଶିଖା ମୁକୁଟ ବରକେଦାର ସଙ୍ଗେ ସୁଘଟ ଅବଲୋକନ୍ତେ ଅଶେଷ କଷ୍ଟ ସନ୍ତାପ ଖଣ୍ଡେ ଗୋ । ଦେଖ ଦେଖ ସୁରଙ୍ଗ ଅଧର ଛବି ଗୋ । କ୍ଷୀର କରଇ କମ୍ବୁ ବନ୍ଧୁଲୀ ରବ ଗୋ । ଅମୂଲ୍ୟ ରତ୍ନପଦକ ମାଳ ବରାଜିବାରୁ ଶ୍ରୀବକ୍ଷସ୍ଥଳ ଯେଉଁ ଭୃଗୁପାଦି ଭଜିଲେ ବଡ଼ ବବେକ କବ ଗୋ ।୨୪। ସନ୍ଥ ରସିକ ନାଗରବର ନାଗରୀ ନାରୀ ଧର‌ର୍ଯ୍ୟହର ଶ୍ରୀ ନନ୍ଦ-ଘୋଷ ରଥରଥୀଏ ରଥାଙ୍ଗ ଧର୧ ଗୋ । ଏହାଙ୍କୁ ଏବେ ଦର୍ଶନ କର କାଉ ଅଶେଷ ଦୁରିତ ହର ଶୁଣି ସୁନ୍ଦରୀ ଷିରେ ସଖୀରେ ଯୋଡ଼ିଲା କର ଯେ । ପୁଣି କେଇ ଦେଖାଇ ସୀରପାଣିଙ୍କ୨ ହେ । ମହାପ୍ରବଳ ମର୍ଯ୍ୟ ପଦଠାଣିଙ୍କ ହେ । ଶରଦପର୍ବଶର୍ବରୀପତି୩ ଗର୍ବ ଜନଇ ଶ୍ରୀମୁଖ ଜ୍ୟୋତି ବଳଭଦ୍ର ଏ ରେବତୀପତି ପ୍ରାଣରମଣି ହେ । ୨୫ । କୁନ୍ଦସୁନ୍ଦର ଚନ୍ଦ୍ରମାକର କମ୍ବୁ ଗୋକ୍ଷୀର ହାର ତୁଷାର୪ ଡିଣ୍ଡିର୫ ସ୍ଥିର କରେ ଶ୍ରୀଅଙ୍ଗ ଶୋଭା ସୁରଙ୍ଗ ହେ । ରେବତୀସୁତା୬ ପ୍ରିୟ ଏ ପନ୍ଥ । ଅରୁଣ୭ ନେତ୍ର ଅରୁଣ୮ ଚନ୍ଦ୍ର ଅରୁଣ ମହାଅରୁଣ ପଦ୍ମ୯ ପ୍ରାୟେ ସୁରଙ୍ଗ ହେ । ଶିରେ ସପତ ଫଣୀ ମଣି ବରାଜେ ଗୋ । ଶିବ ବ୍ରହ୍ମା ସହିତେ ଏହାଙ୍କୁ ଭଜେ ଗୋ । ଅନନ୍ତ ଏହାଙ୍କର ମହିମା ଅନନ୍ତ କୋଟି ବ୍ରହ୍ମାଣ୍ଡ ସୀମା ଅଣୁ ସମାନ କର ବହନ୍ତି ଅପଣା ତେଜେ ଗୋ । ୨୬ । ଦେଖ ସୁଭଦ୍ରା ଭଦ୍ରଦାୟିନୀ୧୦ ଭକ୍ତବତ୍ସଳା ଭବଭଞ୍ଜନୀ ହସିଲା ହେମଶତପତ୍ରକୁ ହାସେ ଶ୍ରୀମୁଖ ଗୋ । ଅବଲୋକନ କରବା ମାତ୍ରେ ଅଶେଷ ଦୁଃଖ ନ ରହେ ଗାତ୍ରେ ପରମାନନ୍ଦ ହୋଇ ବହଇ ପରମ ସୁଖ ଗୋ । କର ସୁଦରଶନୀ ସୁଦରଶନ ଗୋ । କୋଟି ତପନ କରେଁ କର୧୧ ଶୋଭନ ଗୋ ।୨୭। ଏମନ୍ତ କହୁ ସୁଅନୁରାଗେ ଆନନ୍ଦେ

---

୧ ଚକ୍ରଧର । ୨ ବଳଭଦ୍ର । ୩ ଶରତ୍ ପୂର୍ଣ୍ଣଚନ୍ଦ୍ର । ୪ କାକର । ୫ ଫେଣ ୬ ରେବତୀ । ୭ ଈଷତ୍ ଲାଲବର୍ଣ୍ଣ । ୮ ରକ୍ତବର୍ଣ୍ଣ । ୯ ସୂର୍ଯ୍ୟଙ୍କ ହସ୍ତରେ ଥିବା ରକ୍ତପଦ୍ମ । ୧୦ ମଙ୍ଗଳଦାୟିନୀ । ୧୧ କିରଣ ।

Digitized by srujan ka@gmail.com

ଅଗ୍ର ପଙ୍କ୍ତି ଯୋଗେ ବୋଲେ ଶ୍ରୀ ନନ୍ଦଘୋଷରେ ଏହୁ ଗରୁଡ଼ ଚକ୍ର ହେ ଗୋ । ୨୭ । ତାଳଧ୍ୱଜରେ ବଡ଼ଠାକୁରେ ଦେବୀ ବଳପେ ପଦ୍ମ-ଧ୍ୱଜରେ ପତିତଜନମାନଙ୍କୁ ଉଦ୍ଧରିବାକୁ ପାରେ ଗୋ । ପାରିଜାତକ କୁସୁମ ଶିଖରେ ବାନ୍ଧି ସ୍ତୁତି କରନ୍ତି ସୁରେ ଏହି ସମୟେ ଜଣାଏ ଦୀନକୃଷ୍ଣ ସମ୍ମୁଖରେ ହେ । ଅହେ ଅନ୍ତର୍ଭଞ୍ଜନ କମଳାକାନ୍ତ ହେ । କୃପାସମୁଦ୍ର ଦୀନଜନଙ୍କ ସାହା ହେ । ଯହିଁ ଥିଲେ ମୁଁ ତୁମ୍ଭ ଶରଣ ରଖ ନ ରଖ ପ୍ରଭୁ ତା ତୁମ୍ଭ ଜଣାଉଅଛି—ଅବଶ୍ୟ ମୋତେ କରିବ ଅଧା ହେ । ୨୮ । ଅନାଗତପଦ୍ମ ପଲ୍ଲବ୧ ରଥ୨ ଗୋତ୍ର୩ ଦର୍ପେ କୃତ ବ୍ୟର୍ଥ କପୋତ ପୋତ ପରାଏ ପ୍ରଭୁ ନାହିଁ ମୋ ଗତି ହେ । କେବଳ ଏହି ଅଭିମାନହିଁ ମନେ ଘେନିଛି ହେ ସଚ୍ଚିଦାନନ୍ଦ ତୁମ୍ଭେ କରୁଣା-କରୁଣାଳୟ୪ ଅଗତିଗତି ହେ । ଆଶା ଶ୍ରୀରାମ ନାମ ଯେଉଁ ଭରସା ହେ । ତାହା କହିବ କେତେ କେତେ ମୋ ଆଶା ହେ । ହେ ଅନ୍ତର୍ଯ୍ୟାମି ପ୍ରଭୁ ତା ତୁମ୍ଭ ଜାଣିଲେ ଝସାଁ ଏଡ଼େ କଷଣ ଏବେ ଏ ରଥଯାତ୍ରା ଉତ୍ସବେ ହେଉ ସୁଦର୍ଶ ହେ ॥ ଅହେ ପାତକୀ-ଭୟବାରଣ ବାରେହେଁ ମାତ୍ର କିର କାରଣ ଅଧମ-ଉଦ୍ଧାରଣ ଶରଣାଗତ ବତ୍ସଳ ହେ । ବରୁଣସୁତା ହୃଦଭୂଷଣ୫ ଅରୁ-ଣସୁତା୬ ଛବି ଦୂଷଣ ତରୁଣ୭ କାଳ ସନ୍ଧ୍ୟା ଶ୍ୟାମଳ ସୁନ୍ଦରଶୀଳ ହେ । ପ୍ରଭୁ ନାହିଁ ମୋହର କାହିଁ ଦୃଢ଼ ହେ । ବସ୍ତୁ କଲେ ମୁ ସବୁ ପ୍ରକାରେ ମୂଢ଼ ହେ । ମହାଘୋର ଏ ସଂସାରସିନ୍ଧୁ ଏଥୁ ଉଦ୍ଧର ହେ ଦୀନବନ୍ଧୁ ଉପେନ୍ଦ୍ର ଇନ୍ଦୀବରାକ୍ଷ୮ ନନ୍ଦଘୋଷ ଅରୂଢ଼ ହେ । ୩୦ ।



୧ ନୂତନପତ୍ର । ୨ଦେହ । ୩ପର୍ବତ । ୪କୃପାସମୁଦ୍ର । ୫ଲକ୍ଷ୍ମୀଙ୍କ ହୃଦହାର । ୬ଯମୁନା, ଏହାର ଜଳ କୃଷ୍ଣବର୍ଣ୍ଣ । ୭ନୂତନ । ୮ନିକଟ ପଦ୍ମାକ୍ଷୀ ।

Digitized by srujan ka@gmail.com

## ଦଶମ ଛାନ୍ଦ ।

### ରାଗ ବଙ୍ଗଳଶ୍ରୀ ।

ଏଥୁ ଅନନ୍ତ ଜଗନ୍ନାଥ ଦୈବଗଣ ରଥ ଗଜ ଅଶ୍ୱ ନର । ଅତି ସମ୍ଭ୍ରମେ[1] ଆନନ୍ଦଭର ହୋଇ କଲେ ପ୍ରଭୁ ଅଭିସାର[2] । ୧ । ଆଗେ ତଳଭଦ୍ର ପଛେ ବଳଭଦ୍ର ଅନୁଜା[3] ମଧ୍ୟରେ ଦେବୀ । ଖଦୀ ଆଲଟ ଚାମର ପଙ୍ଖା ଧରି ପାଶେ ଲୋକେ ଛନ୍ତି ସେବି । ୨ । ଘଣ୍ଟା ମର୍ଦ୍ଦଳ ମହୁରୀ ଶଙ୍ଖ ଭେରୀ ଦୋଶଲୀ କାହାଳୀ ବାଜେ । ଦଇତ୍ର ପତିତ ଗଡ଼ ଗଡ଼ିବାକୁ ନୀଳଗିରିନାଥ ସାଜେ । ୩ । ମହିମା ମଣିମା ଜାଙ୍କୁ ଗଣିମା ଶିଙ୍ଗା ଘଣ୍ଟ ଅଗ୍ରମନ୍ତ୍ରେ । ଜୟ ଜୟ ଗୋଳ ଅତିହିଁ ପ୍ରବଳ ସମୁଦ୍ର ମନ୍ଥନ ପ୍ରାୟେ । ୪ । ଅଗରୁ ଧୂପ ଅମ୍ବରରେ ପ୍ରକଟି ସ୍ୱଗର କୁସୁମ ବୃଷ୍ଟି । ଆଗେ ଅପସରୀ ନୃତ୍ୟ ଗୀତ କରି ପ୍ରକାଶନ୍ତି ଧ୍ୱଜ-ସ୍ଥିତି । ୫ । ଚନ୍ଦ୍ରବଦନା ଗଜେନ୍ଦ୍ରଗମନୀ ଶିଶୁଗାମିନ୍ଦ୍ର ମଧ୍ୟମା । ମନ୍ଦହାସିନୀ ମନ୍ଦପେକ୍ଷିଣୀ ମୁକୁନ୍ଦଦଶନୀ ରମା । ୬ । ନୀଳ କୁଞ୍ଚିଲଟ ପ୍ରଲମ୍ବିତ କୁନ୍ତଳେ କେ ରଚନ୍ତି ଲୋଟଣି ଜୁଡ଼ା । ଗର୍ଭମୂଳେ ଖୋସି କେତକୀପାଖୁଡ଼ା କରୁଅଛନ୍ତି ପରବୁଡ଼ା । ୭ । କାହା ବେଣୀ କାମ-ତୁଣୀରଙ୍କ ଜିଣି ପାଉଅଛି ଦିବ୍ୟ ଶୋଭା । ଝିଲମିଲି ଚନ୍ଦ୍ରରଶ୍ମି ଝଲ-କନ୍ତେ ନାଗର ନୟନ ଲୋଭା । ୮ । ଭୁରୁଭଙ୍ଗିମା ନୟନ ତରଙ୍ଗିଣୀ କରି ହସ୍ତକ ଦେଖାନ୍ତି । ତାଳ ମାନ ଘାତ ହୃଦୟ ସଙ୍ଗତେ ସୁଗ-ସମ୍ମତି ରଖନ୍ତି । ୯ । ରସ୍ତବିନ୍ଦ ଗ୍ରୀବାନ୍ତ ଭାଗ୍ୟବନ୍ତ ନିତମ୍ବବନ୍ତମଣ୍ଡଳୀ । ନାନାଗତିରେ ନାନା ରଙ୍ଗ କରନ୍ତି ଝଳ ଅଙ୍ଗମାନ ଚାଳି । ୧୦ । ବଡ଼ କବି ତାଙ୍କ ଉଡ଼ିବାକୁ[9] ପାଇଲେ ମୁ କେତେ ଜାଣିବ ତାହା । ଉର୍ଦ୍ଧ୍ୱ-ରେଖାମାନେ[10] ଅର୍ଦ୍ଧରେଖା[11] ହେବେ ଯନାଇଲେ ମାନ୍ତ୍ର ଯାହା । ୧୧

---

[1]ଆଡ଼ମ୍ବରରେ । [2]ବଇପ୍ । [3]ସାନଭଉଣୀ । [4]ଛୁଅର୍ଦ୍ଧ ମଧ୍ୟା । [5]କୁଞ୍ଚୁକୁଞ୍ଚିଆ । [6]ଲମ୍ବ । [7]କେଶରେ । [8]ଅନ୍ତବେଶଷକୁ । [9]ମୂଲ୍ୟବକୁ । [10]ତପସ୍ୱୀମାନେ । [11]ତରଳିତ ଚନ୍ଦ୍ର ।

Digitized by srujan ka@gmail.com

କାମଙ୍କ କରବାଳ୧ ଯାହାରୁ ପ୍ରବଳ ଅଳପ ହାସ କଟାକ୍ଷ । କେ ସହଜା
ଯେବେ ନ ଥାନ୍ତା ପ୍ରଭୁଙ୍କ ଦରଶନ ସ୍ୱେଚ୍ଛାପକ୍ଷ । ୧୨ । ନଗ୍ର ନର
ନାରୀ ବାହାର ହୋଇଲେ ଦର୍ଶନ କରିବା ଆଶେ । ବିବିଧ ବର୍ଣ୍ଣ
ଅଟେଗ୍ରପଣ୍ଣ୨ ଷଏଣ୍ଡ୩ ନାନା ଅଳଙ୍କାର ବେଶେ । ୧୩ । ଶ୍ୱେତ ପୀତ
ନୀଳ ଲୋହିତ ବସନ ପରିଧାନ କରି ଅଙ୍ଗେ । ପନ୍ତି ପନ୍ତି ହୋଇ
ଗମନ୍ତି ଯୁବତୀ ସୁତ ପତି ଯୋଜ ସଙ୍ଗେ । ୧୪ । ଏମନ୍ତେ ପଥରେ
ରଥରେ ଦେଖନ୍ତି ଜଗନ୍ନାଥ ଦେବଙ୍କେ । ଆନନ୍ଦରେ ନିଉଛାଳି
କରନ୍ତି ଅଙ୍ଗ ଆଭରଣ ଲାଜେ । ୧୫ । ନୟନକମଳ ନୀଳୋତ୍ପଳମାଳ
ମଣ୍ଡି ପ୍ରଭୁଙ୍କ ଶ୍ରୀଅଙ୍ଗେ । ଆନନ୍ଦେ ଅଶ୍ରୁ ପୁଲକଭରେ ସ୍ତୁତି କରନ୍ତି
ବିବିଧ ରଙ୍ଗେ । ୧୬ । ଆହେ ଅମୃତଦାନ ସୁଖଦାୟକ ଅନନ୍ତଅଙ୍କ-
ହାରୀ୪ । ଆପଣା ଉଦୟ ଅନ୍ତର କାଳରେ ତମ୍ଭଳା ଅନ୍ତର କରି । ୧୭ ।
ଅଳପ ହସି ଶିରେ କର ନବେଣୀ ଜଣାଏ କେଉଁ ନାୟିକା । ଏଡ଼େ
ବରଷା ସମୟେ ପ୍ରଭୁମାନେ ପ୍ରିୟଙ୍କୁ କରନ୍ତି ଏକା । ୧୮ ।
କେ ବୋଲେ ତାଙ୍କୁ କହି ଅର୍ଥ ନ ଥିବେ କହିଲେ ଅସ୍ୱନ୍ତେ କାହୁଁ ।
କେ ବୋଲେ ନଇଲେ ନ ଚଳଇ କାର୍ଯ୍ୟ ଜଗତ ଯାଳନ୍ତି ଯହୁଁ ।୧୯।
କେ ବୋଲେ ଏହାଙ୍କର ନୁହେ ଅପ୍ୟତ୍ର ଠାକୁରାଣୀଙ୍କର ଦୋଷ ।
ବାନ୍ଧୁପ୍ରାଣେ ଛନ୍ଦି ବନ୍ଦୀ କରିଥିଲେ ଏ ତାଙ୍କୁ କରନ୍ତେ ତୋଷ । ୨୦ ।
ଏହାଙ୍କେ ଦୀନବନ୍ଧୁ୫ ନାମ ପ୍ରକାଶ ହୋଇଛୁ ତିନି ଲୋକରେ ।
ଏବେହେଁ ଅନାଥ ଚକ୍ର୬ ଅଥର ପଦ୍ମ୭ ପ୍ରକାଶି ଅଛନ୍ତି କରେ୮ । ୨୧ ।
-ଅମୃତଆଧାର୯ ସବୁ ଲୋକଙ୍କର ନୟନର ଅଳଙ୍କାର । ମହା-

---

୧କନ୍ଦର୍ପଖଡ୍ଗ । ୨କେତେ ପୁରୁଷ ନାନାପ୍ରକାର ଲୁଗା ପିନ୍ଧି ଏବଂ ୩କେତେକ ମୁଣ୍ଡଦେଶରେ ବା ଲକ୍ଷାଧିକ ବେଶ ଧରି । ୪କ୍ଷେତ୍ର-ଦେବଙ୍କ ହୋଡ଼ଶାସ୍ତ୍ରୀ । ୫ଦୀନବନ୍ଧୁ-ଜଗନ୍ନାଥ । ୬ହସ୍ତରେ ଚକ୍ର । ୭ପଦ୍ମ ଧରିଛନ୍ତି ଦିନବନ୍ଧୁ-ସୂର୍ଯ୍ୟ । ୮ତରଣିଦ୍ୱାରା ଚକ୍ରବାକ ପକ୍ଷୀ-ଙ୍କ ଆନନ୍ଦିତ ଏ । ୯ଜଗନ୍ନାଥ, ମୁକ୍ତିଧାମ । ସୂର୍ଯ୍ୟକିରଣ 'ଅମୃତ' ଜଳକୁ ବହନ କରୁଥିବା ହେତୁ ସୂର୍ଯ୍ୟ ଅମୃତାଧାର ।

Digitized by srujan ka@gmail.com

ଆନନ୍ଦରେ ଘନରସନ୍ଧିରେ କମଳା ଜରେ୧ ବିହାର । ୨୨ । ଅଶେଷ ସୃଷ୍ଟିପାଳ ପ୍ରତିପାଳନ୍ତି ଅନନ୍ତ୨ କୋଳରେ ଥାଇ । ଚକ୍ରରଥପତି୩ କଶ୍ୟପନନ୍ଦନ୪ ଏହାଙ୍କ ରଥେ ବସଇ । ୨୩ । ଅତି ଅହ୍ଲାଦ କରନ୍ତୁ ସର୍ବେ ଏ ଅମୃତ କରେ ଚନ୍ଦ୍ରମା । ତାରକାମଣ୍ଡନ ତମବଖଣ୍ଡନା କମଳାଙ୍କ ସୁଜ୍ଞସ୍ୱାମୀ । ୨୪ । ସର୍ବେ ବନ୍ଧୁ୫ ନନ୍ଦିଘୋଷ ଉଦୟେ୬ ଯେବେ ନୃତ୍ୟନ୍ତେ ଉଦୟ । ଅନ୍ଧ ଜନ୍ମ ନାଶ ହୁଅନ୍ତି । ଅଶେଷ ଅଘ-ଅନ୍ଧକାର୭ ଭୟ । ୨୫ । ଏଡ଼େ ନିର୍ମଳ ହୋଇ ଯେ ନ ଦିଶନ୍ତି ମହାଗତି ବାଟ୮ ସର୍ବି । ଆନନ୍ଦଉଦଧି୯ ନ, ଉଚ୍ଛୁଳ ନେତ୍ର-ଚକୋର ହୁଅନ୍ତି ସୁଖୀ । ୨୬ । ହୃଦର ଚନ୍ଦ୍ରକାନ୍ତ୧୦ କେ ଏମନ୍ତ କଷ୍ଟ ହରଷ କରନ୍ତି । କରକମଳ୧୧ କାହିଁପାଇଁକ ଆଉ ମୁଦ୍ରିତ ଦଶା ଧରନ୍ତି୧୨ । ୨୭ । ଶୋକ-ରଥାଙ୍ଗ୧୩ ଅଙ୍ଗସଙ୍ଗ ଛାଡ଼ନ୍ତି ନାହିଁରେ ପ୍ରାଣସଜନ । ଏତେକ କରବାକୁ ସମ ହୋଇଲା ଭଲ ଗଣ୍ଡିଗ ରଜନୀ । ୨୮ । ତନୁ୧୪ ଶ୍ରୀଭଗ୍ନ ଉପଲ୧୫ ଦ୍ରବ କ ଏ ଦରଶନଂଚାହାରେ । ଏହା କହୁ କମଳନେତ୍ରୀ କଳାପ୧୬ ତୋଷ ହୁଏ ଯେ ଯାହାଙ୍କ । ୨୯ । କେ ବୋଲେ ଅଷାଢ଼ମାସ ପରବେଶ

---

୧ ଜଗନ୍ନାଥଙ୍କଠାରେ ଲକ୍ଷ୍ମୀ ନିବିଡ଼ ରସରେ କ୍ରୀଡ଼ା କରନ୍ତି । ସୂର୍ଯ୍ୟ ଜଳପୂର୍ଣ୍ଣ ପଦ୍ମବନରେ କ୍ରୀଡ଼ା କରନ୍ତି । ୨ ଶେଷଦେବ ଏବଂ ଆକାଶ । ୩ଚକ୍ରରଥ ଗନ୍ଧର୍ବପତି ଏବଂ୪ ଗରୁଡ଼ ଜଗନ୍ନାଥଙ୍କ ରଥରେ ବସିଥାନ୍ତି । ସୂର୍ଯ୍ୟ ଚକ୍ରିତ ରଥର ସ୍ୱାମୀ ଅଟନ୍ତି ଏବଂ ଏହାଙ୍କ ରଥରେ ଅରୁଣ ବସିଥାନ୍ତି । ୫ଚନ୍ଦ୍ର ଏବଂ ବନ୍ଧୁ । ୬ନନ୍ଦିଘୋଷ ରଥ, ଉଦୟ-ପର୍ବତ, ହେଲା ତହିଁରେ ୭ପାପ-ଅନ୍ଧକାରର । ୮ମୁକ୍ତିପଥ । ୯ଆନନ୍ଦ ସମୁଦ୍ର । ୧୦ହୃଦୟ-କୁମୁଦକୁ । ୧୧ହସ୍ତପଦ୍ମ । ୧୨ହାତଯୋଡ଼ି ସମସ୍ତେ ସ୍ତୁତି ବନ୍ଦନାଦି କରନ୍ତେ । ୧୩ଶୋକ-ଚକ୍ରବାକ । ୧୪ଦେହ । ୧୫ଚନ୍ଦ୍ରକାନ୍ତ ପଥର । ୧୬ପଦ୍ମନୟନା ସ୍ତ୍ରୀମାନେ ।

Digitized by srujan ka@gmail.com

ଛାଣି ଶ୍ୟାମ ଘନାଘନ୧ । ଝଗଡ଼ାପ ଖଣ୍ଡିବାକୁ ମଣ୍ଡିଲେ ଗ୍ରୀନଦି-
ଘୋଷ ଗଗନ । ୩୦ । ଅମୃତ ବୃଷ୍ଟି କର ସୃଷ୍ଟି ଯାକ ଏ ରକ୍ଷା କରବେ
ଗୋ ସଖି । ସୁଖୀ ହୋଇ ନୃତ୍ୟ କରନ୍ତି ଦେଖ ତ ନୃତ୍ୟକାରୀ ବାର-
ଣୀଗୀ୨ । ୩୧ । ଶ୍ୱେତ ତାର ହାର୩ ବଳାକା ନିକର୪ ଏ ଚିତ୍ର ଅମ୍ବର୫
ଶୋଭୁ । ଦଶଣା ରଙ୍ଗଣୀ ଚମ୍ପାମାଳ ଶ୍ରେଣୀ ଇନ୍ଦ୍ର ଶରାସନ୬ ପ୍ରଭୁ
। ୩୨ । ମହାଶମ୍ଭରେ୭ ନାନ୍ଦଘୋଷ ଅମ୍ବରେ୮ ହେଣୁ ଏ ଘନ
ଘୋଟିଲା । ପ୍ରତି ଅଙ୍ଗ ଦେଖ ପୁଲକ୯ କଦମ୍ବ କଦମ୍ବ୧୦ ଭେଣ ପୁଷ୍ପ
। ୩୩ । ରଙ୍ଗବସନୀ୧୧ ଇନ୍ଦ୍ରଗୋପ୧୨ ଅବନୀ ଉଦେ କରିବାକୁ ଏହୁ ।
କେବଳ ଏକ କଥାଏ ମାତ୍ର ଏଥେଁ ନ ଦେଖାଗଲା ଗୋ ସହୁ । ୩୪ ।
ଏତେ ଘନକାଳେ ଚପଳା୧୩ ନ ଖେଳେ ଏହୁ କଥା ଅଚମ୍ଭିତ । କେ
ବୋଲେ କ୍ଷୀରେ ଘୃତ ଥିଲା ପରାପ୍ରେ ହୋଇଥିବେ ଅନ୍ତର୍ଗତ । ୩୫ ।
ଶ୍ରୀ ଚିତ୍ତେ୧୪ ସ୍ୱର ଚତୁରେ ଚନ୍ଦ୍ରକର୧୫ ଅଙ୍ଗରେ ଯେମନ୍ତ ଛୁଇ ।
ଏନା ଦେହୁରେ ଏ ପ୍ରକାଶ ନହନ୍ତି ଯେ ଯାହା ସ୍ଥାନରେ ଥାଇ । ୩୬ ।
ଦେହୁ ଯାମିନୀ କାନ୍ତକୁ କାମିନୀ କାମିନୀଙ୍କ କାନ୍ତ୧୬ କାନ୍ତ୧୭ ଅଙ୍ଗକୁ
ଭୂଷଣ ଭୂଷଣକୁ ଅଙ୍ଗ ପରଶେ ଏ ଶ୍ରୀମନ୍ତ୧୮ । ୩୭ । ଏହାଙ୍କ ଅଙ୍ଗ
ଯାକତ ତାହାଙ୍କର ନାମରେ ହୋଇଛୁ ଛଇ । ଅସ୍ତ୍ରଅନ୍ତର୍ଗତ ହେ-
ଲେହେଁ ଯେମନ୍ତ ରହିକୁ ଶୋଭା କରଇ । ୩୮ । ଅଗ ତାଙ୍କ
ନାମ ଥିଲେ ଅଭିରାମ୧୯ ଶୁଭଇ ଏହାଙ୍କ ନାମ । ଏହୁ ଯେକ ସେ
ଏହାଙ୍କର ମଣ୍ଡନ ଏ ତାହାଙ୍କ ସୁଖଧାମ । ୩୯ । ଏବଁ ଅନେକ

---

୧ବର୍ଷିଲା ମେଘ । ୨ମୟୂର । ୩ମୁକ୍ତାହାର । ୪ବକପନ୍ତି ।
୫ପୀତାମ୍ବର ଏବଂ ଦିଗ ଓ ଆକାଶ । ୬ଇନ୍ଦ୍ରଧନୁ । ୭ମଙ୍ଗଳ
ଯନ୍ତ୍ରରେ । ୮ଆକାଶରେ ୯ରୋମାଞ୍ଚ । ୧୦ କଦମ୍ବଫୁଲ ସମୂହ ।
୧୧ରଙ୍ଗବସ୍ତ୍ର ପିନ୍ଧିଥିବା ସ୍ତ୍ରୀମାନେ ବା ସୁଭଦ୍ରା । ୧୨ବର୍ଷାକାଳୀନ
ଲୋହିତବର୍ଣ୍ଣ ପୋକ ବିଶେଷ । ୧୩ବିଦ୍ୟୁତ ଏବଂ ଲକ୍ଷ୍ମୀ ।
୧୪ହେଦରେ । ୧୫ଅଗ୍ନି । ୧୬ମନୋହର । ୧୭ସ୍ୱାମୀ ୧୮ଶୋଭାଯୁକ୍ତ ।
୧୯ ସୁନ୍ଦର ।

Digitized by srujan ka@gmail.com

ଏମନ୍ତ କହୁବାରୁ ଶୀଳନ୍ତ ସେ ପଦ୍ମଅକ୍ଷୀ । ଚଳନ୍ତ ରହୁଁକ କର ମରୁଗତି ହୋଇବାରୁ ଲୋକେ ସୁଖୀ । ୪୦ । କେ ବୋଲେ ଧନ୍ୟ ପ୍ରଭୁପୂର୍ଣ୍ଣ ଲକ୍ଷଣ ଏହୁଠାରେ ଅଛୁ ଦେଖ । ବେଢସ୍ଥାଇ ଏକାବେଳେ ଚଳୁଥିଲେ ପାଉଥାନ୍ତି ଲୋକେ ସୁଖ ।। ଧନ୍ୟ ଧନ୍ୟ ଘନସାର୧ ଅଙ୍ଗ ଧନ୍ୟ ଵରୁଣନନ୍ଦନୀ୨ ପ୍ରିୟ । ଭଲା ଭଲା ଘନସାର୩ ତନୁ ଭଲ ବରୁଣନନ୍ଦନୀ୪ ପ୍ରିୟ ।୪୧। କେ ବୋଲେ ସଖି ଏ ଯାତ ସାକ୍ଷାତେ ସ୍ୱର୍ଗପୁର ପ୍ରାୟେ ଦିଶେ । ଦେଖ ଚତୁରଥ୫ ଗନ୍ଧର୍ବ ଗାୟକ ପ୍ରାୟେ ଦେବସ୍ୱଳ୍ପ୬ କ ସେ ।୪୩। ବ୍ରହ୍ମାଦି ଦେବତାମାନେ ପଦ୍ମୋଅଣା ଅଛନ୍ତି ଗୃହପାଶରେ । ତ୍ରିବ୭ ଚନ୍ଦନ ବନତା ଯୋଗ କର ସେବା କରନ୍ତି ତୋଷରେ ।୪୪। କେ ବୋଲେ ସଖି ଏ ଯାତ୍ରା ସିନ୍ଧୁପ୍ରାୟେ ପ୍ରତେ ହେଉଅଛୁ ମୋତେ । ଅଵଶ୍ରାମ ହୋଇ ଗ୍ରମରେ ଲହରୀ କଦମ୍ବ୮ ଦିଶୁଛୁ କେତେ ।୪୫। ସିନ୍ଧୁର୯ ମକର ଅଶ୍ୱଶିଶୁମାର ଏମାନେ ଛନ୍ତି ବହୁତ । କୋଳାହଳ ମହାଗର୍ଜନ ଏହାର ମୁହୂର୍ତ୍ତେ ରହୁ ନାହିଁ ତ ।୪୬। ରଥ ବୋଇତମାନେ ଏଥେ ସର୍ଯୀରେ ଚଳନ୍ତି କେମନ୍ତ ହୋଇ । ଯାନ୍ତି ପତନୀ ନେତ ନାନା ଅମ୍ବର୧୦ ଅଖିଳ ଭୁବନ୍ତୁ ପାଇ ।୪୭। ମହତ ସାଧବ ପରାୟେ ମାଧବ ମହାଶୋଭନ ଦିଶେ । ମହାସମ୍ଭ୍ରମରେ ଚଉବର୍ଗ ଯେନ ଦେବଦ୍ୱୀପରୁ କ ଅଛେ ।୪୮। ଭାଇ ବଳରାମ ସୁଭଦ୍ରା ଭଗିନୀ ଅଣି ଥଛନ୍ତି ଏ ସଙ୍ଗେ । ଅତି ମନୋହର ଅଳଙ୍କାର ଦେଖ ମଣ୍ଡି ଯେ ଅଛନ୍ତି ଅଙ୍ଗେ ।୪୯। ଅମ୍ବୁଦ୧୧ ଚମ୍ପିଲା ଚନ୍ଦ୍ରଶିରଗିର୧୨ କଳଗୃ୧୩ ପ୍ରାୟେ ସୁନ୍ଦର କାମପାଳ୧୪ ବାମ-କଟକରେ୧୫ ଦେଖ ସମକୃଷ୍ଣ ବାଧ ସାର ।୫୦।

---

୧ କର୍ପୂର । ୨ କାଦମ୍ବରୀ ମଦ୍ୟ । ୩ ନବଜଳ ନୀଳମେଘ । ୪ ଲକ୍ଷ୍ମୀ । ୫ ଗନ୍ଧର୍ବ ଉଚ୍ଚୈଃଶ୍ରବା ଏବଂ ଚିତ୍ରିତ ରଥ । ୬ ଇନ୍ଦ୍ର ଏବଂ ଜଗନ୍ନାଥ । ୭ ମାଲ୍ୟ । ୮ ସମୂହ । ୯ ହସ୍ତୀ । ୧୦ ବସ୍ତ୍ର । ୧୧ ମେଘ । ୧୨ କୈଳାସ ପର୍ବତ । ୧୩ ପର୍ବତର ପାର୍ଶ୍ୱଭାଗ । ୧୪ ବଳରାମ । ୧୫ ହପରାତ ପାଖରେ ।

Digitized by srujan ka@gmail.com

ସ୍ଥିତକମଳ୧ କୋଳରେ ଭୃଙ୍ଗମେଳ ପ୍ରାଏ ନୟନ ଆକୃତି । ବରୁଣ-
ନନ୍ଦିନୀ୨ ସ୍ନେହସ୍ରାବ ସେନ ଏବେହେଁ ପଡ଼ୁଛୁ ମାତି । ୫୧ । ରେବନ୍ତ
ଲୁଚ ଚନ୍ଦ୍ରହାରଙ୍କ୩ କରେ ଶୋଭିତ ହାଣ୍ଡି ମୂଷଳ । କ୍ଷୀରସମୁଦ୍ରରେ
ବକ୍ଷୋଜ ପସ୍ୱେ ଶ୍ରୀଅଙ୍ଗେ ଅନେକ ମାଳ ।୫୨। ଦନ୍ତବକ୍ର୪ ଦନ୍ତୀ
ଅନ୍ତକ୫ ଏହୁଁ ପ୍ରାଣୀ ଦୃଢ଼ ପ୍ରସଙ୍ଗେରେ । ଧର୍ମସଙ୍ଗବର୍ଦ୍ଧିଣୀ୬
ଆକର୍ଷଣ ଏହୁ କଲେ ଏକ୍ଷଣରେ । ୫୩ । ଏ ବେନି ଘାଇଙ୍କ ମହିମା
ଅନ୍ୟୋନ୍ୟ ଏହା କେ କହିବ ସଖି । ସହସ୍ର ମୁଖେ ସହସ୍ରମୁଖ୭
ଯାହା ଶେଷ ନ କରିବେ ଲେଖି । ୫୪ । ଏମନ୍ତେ କେ କେତେ
ପ୍ରକାରେ କହନ୍ତେ ବଳଦେବ ଦେବରାଏ । ଭକ୍ତଜନ ଯେକି ବଳ-
ଗଣ୍ଡି ବାନ୍ଧି ନବରେ କଲେ ବଳରାଏ । ୫୫ । ଅମୂଲ୍ୟ ଅଙ୍ଗେ ଅମୂଲ୍ୟ
ଅଭରଣ ଉଲାଗି୮ ହୋଇ ଭୁରିତେ । ଦୁଇପ୍ରହର ଧୂପସଜ ଉଲ୍ଲଗି
ହୁଅନ୍ତି ଭକ୍ତଙ୍କ ହିତେ । ୫୬ । ଫଳସୁରେଖା ଫୁଲରେ ବଢ଼ ଶୃଙ୍ଖା
ଫୁଲେ ହୁଅନ୍ତି ସୁବେଶ । ପାଇଁ ପର୍ଯ୍ୟଣୀରେ ଫୁଲ ଥାଇ ଭକ୍ତମାନଙ୍କ
ହୃଦପ୍ରଦେଶ । ୫୭ । ବେଣ୍ଟ ବଢ଼ାଇ କର୍ପୂର ଲାଗି ହୋଇ ଧୀରେ
ଦେଖ ମନୋହରେ । ନାନାପ୍ରକାରେ ଶୀତଳଭୋଗ ନେଇ ବାଢ଼ନ୍ତି
ମହାସ୍ନାଅରେ । ୫୮ । ଖଣ୍ଡିକଡ଼ିଅରେ ମଣ୍ଡା ହୋଇଥାଇ ଖଣ୍ଡି ଖଣ୍ଡି
ହୋଇ ଅଛି । ଅଙ୍କୁର୯ ମୁଗମାନଙ୍କରେ ପନ୍ତ୍ର ଏ ହୋଇଥାଇ
ମନୋହର । ୫୯ । ରସଆଳୟ ରସାଳି୧୦ ରମ୍ଭାଫଳ୧୧ ସୁବର୍ଣ୍ଣ ବର୍ଣ୍ଣିରୁ
ଗୋଟ । ଚନ୍ଦ୍ରରୁ ଉଜ୍ଜ୍ୱଳ ଚନ୍ଦ୍ର ହୋଇ ମେଳ ମଣ୍ଡା କୋଷ ଅଭି
ଭୋଗ ।୬୦। ଗଙ୍ଗାବାଣ ପଦ୍ମଃପେଟୀ୧୨ ଅତିଶୟ ପକ୍ୱ ସପୁରୀ ପନସ ।
ଅନେକ ମତେ ଅମୃତକୁଣ୍ଡ ହୁଏ ପଡ଼ି କୃଷ୍ଣଚନ୍ଦ୍ର୧୩ ରସ । ୬୧ ।
ଶର୍ଷଶରକ ସର ଅଦି ଅନେକ ସୁବାସକାଳ ସହୁଛି । ଶ୍ରୀନନ୍ଦିଘୋଷ

---

୧ ଶ୍ୱେତପଦ୍ମ । ୨ ଲକ୍ଷ୍ମୀ । ୩ ବଳରାମ । ୪ କୃଷ୍ଣ ବିଦ୍ୱେଷୀ ନୃପତି ବିଶେଷ । ୫ ହସ୍ତୀ । ୬ ଯମୁନା । ୭ ସର୍ପରାଜ । ୮ ଉତାରିବା । ୯ ଗଜା । ୧୦ ଅମ୍ବ । ୧୧ ପାଚିଲା କଦଳୀ । ୧୨ ନାରିକେଳ ବିଶେଷ । ୧୩ ମରିଚ ଓ କର୍ପୂର ।

Digitized by srujan ka@gmail.com

ରଥୀ ସେଗ ଙ୍କରନ୍ତି ମୁଁ ତାହା କହୁଛ କେତେ । ୬୨ । ମୁଣୋନ୍ମେ ଶେଷେ ଅଚମନ କହାଇ ଶ୍ରୀମୁଖ ପୋଛ ସୁବାସ । ବଡ଼ିଅଲାଗିରେ ବକ୍ଷେ କର ସବୁ ଲୋକଙ୍କୁ କରନ୍ତି ତୋଷ । ୬୩ । ଜଗନ୍ନାଥଙ୍କେ ନୃପତି ଜାଣନ୍ତି ପ୍ରବାସ କରିବା ସୁଖ । ଭୃତ୍ୟବତ୍ସଳ ବୋଲି ହେନି ବୋଲନ୍ତି ଜାଣନ୍ତି ଲୋକଙ୍କ ଦୁଃଖ । ୬୪ । ସ୍ୱାଦ ଲଭିଲେ ସ୍ୱାଦ-ଛାଡ଼ି ଏମନ୍ତ ହୁଅନ୍ତି ଅତି ଅଧୀନ । ଦେବା କଥାରେ ସଂଶୟ ନାହିଁ ଚତୁର୍ବର୍ଗହୁଁ ଦିଶେ ନୂତନ । ୬୫ । ବଡ଼ଲୋକଙ୍କ ପଣେ ଯେତେ ପୁରାଣରେ ସାଜଲୋକ ପକ୍ଷପାତି । ଦାସ୍ୟାଶ୍ରୀଲ ଲବ ତେଲ ଅବା ଜହ୍ନ ଦୀନବାନ୍ଧବ ବୋଲାନ୍ତି । ୬୬ । ଶରଣରକ୍ଷଣ ଅର୍ଥ ପ୍ରହରଣ ଧର ହୋଇ ଉଛୁ ବାହା । ଅର୍ଜ୍ଜନ ପାଞ୍ଚୁ ଅପଲକ ହୋଇ ହେଉଥାନ୍ତି ଗୁହାଁ ଗୁହାଁ । ୬୭ । ଅଧୀମତ୍ତ୍ୱପଣେ ମହିମା ଏମନ୍ତ ଦୂତହୁଁ କରନ୍ତି ଦାରୁ । ମହାପତିତଜନ ରକ୍ଷା କରନ୍ତି ଦୁଃସହ କାଳଦଣ୍ଡରୁ । ଏଡ଼େ ବଡ଼ ପ୍ରଭୁ ଥାଉଁ ଥାଉଁ ଦୀନକୃଷ୍ଣ ଏତେକ ମୁରୁଖ । ଅନ୍ୟ ଧ୍ୟାନରେ ସେବାରେ ପଡ଼ି ପାଉଥାଇ ମହାଦୁଃଖ । ୬୯ । ଶକର ଯେମନ୍ତ ଗଳିମୋଳି ଛାଡ଼ି ପଦ୍ମବଦରଜ ଗନ୍ଧେ । ମକ୍ଷିକା ଦୁର୍ବାସନା ବଶରୁ କର ଦୁର୍ବାସନା ଦ୍ରବ୍ୟ ବନ୍ଧେ । ୭୦ । ପେଟ ଛାର ପାଇଁ ଅନାଥ ହୋଇ ଦୁଃଖ କଥା କହଇ । ଅସ୍ତ୍ରୁତ୍ୟ ଲୋକଙ୍କ ନାନା ସ୍ତୁତି କର ନମ୍ରତା କର କହଇ । ୭୧ । ଅହେ ପ୍ରଭୁ କନ୍ଧ ଯୋଗ୍ୟ ମହାରଥୀ ଶ୍ରୀଗଣ୍ଡିର୍ କଉତୁକୀ । ଦୀନକୃଷ୍ଣ ଦାସ ଦୁଃଖ ଜଣାଇବା ହୋଇ ନ ନାହିଁ ଏଠିକି । ୭୨ ।



---

୧ ଅସ୍ତ୍ର ।

## ଏକାଦଶ ଛନ୍ଦ । ରାଗ କଳଡ଼ା ।

ବଳଗଣ୍ଡିବାଟ ନଗରୁ ବଳସ୍ୱେ କୁରନ୍ତି ପ୍ରଭୁ ଧୀରେ ଧୀରେ । ମହାଗନ୍ଧଦଣ୍ଡ ଲଗାଇ ସମ୍ବରେ୧ । ବେନି ପାଶରେ ବର୍ଣ୍ଣରଚ୍ଛତ୍ର ବସ୍ତାଙ୍କ ବୀରଘୋଷ ବାଦ୍ୟ ଶୁରେ ହେ । ସୁଜନେ । କରନ୍ତିରେ ଜୟ ଜୟ ଶବଦ । ବସ୍ତୁ ପଦେ୨ ଶୁଭଇ ପ୍ରତିନାଦ୩ । ବୃନ୍ଦାରକବୃନ୍ଦ୪ ବରଷନ୍ତି ପୁଷ୍ପ ବଢ଼ାଇ ପରମାନନ୍ଦ ହେ । ୧ । ଦେଖି ସେ ବାଲି ମନ୍ଥର କର ଗନ୍ଧକୁବେ ସେ ଗୁଣ୍ଡିଚା ବନୋଦ । ଚୁରି କରାଇ ଶ୍ରୀମହାପ୍ରସାଦ । ରନ୍ଧ ରନ୍ଧ ହୋଇ ରଙ୍ଗେ ବେଳିଭାଇ ଦେଖନ୍ତି ଭକ୍ତ ପ୍ରମୋଦ ହେ । ସୁଜନେ । ଏକ ହସ୍ତରୁ ଆରେକ ନିଅନ୍ତି । ସେବା କରି ଶିରେ କର ଦିଅନ୍ତି । ସୁନାଶୀରଠାରୁ୫ ଅଧିକରେ ଅମୃତକୁଣ୍ଡ ବଳେଣ୍ଡେ ପିଅନ୍ତି ହେ । ୨ । ଏହି ରୂପରେ କୋଳାହଳ ପ୍ରବଳ କୈବଲ୍ୟ କୁରି ବାଟ-ଯାକ । ଏହା କହିଲେ ହୋଇବ ଅନେକ । ଏକବସ୍ତୁ ହୋଇ ଅଛନ୍ତି ଚଉରେ୬ ଏକ ହୋଇ ତିନିଲୋକ୭ ଲୋକ ହେ । ସୁଜନେ । ଯେଉଁରୂପେ ବରଷା ଜଳ ଯାଇ । ଲେଖା ନ ଯାଇ ଗଗନର ତାରା । ସେହି ପ୍ରକାରେ ଜଗନ୍ନାଥ ନନ୍ଦିଗ୍ରାମ ଅମୃତ ସମୁଦ୍ର ପରି ହେ । ୩ । ଅଶେଷ ସୁଖଧାମ ଅଶ୍ରୁ ବିଶ୍ରାମ ହରଷ ଏ କଉତୁକରେ । ବଳେ କରନ୍ତି ଗୁଣ୍ଡିଚା ନିକଟରେ । ହୁଳା ବିନୁଜି ଚନ୍ଦ୍ରଦୀପ ଲାଗିଲା ରବି ଅସ୍ତ ସମୟରେ ହେ । ସୁଜନେ । ଏହି ସମୟେ ଭକ୍ତ ଧ୍ୱଜଗ୍ରାହୀ । ରଥ ଉପରେ ବନ୍ଦାପନା ହୋଇ । ଚୂଡ଼ାନ୍ତ କରେ ଶ୍ରୀଚକ୍ର ଭର ଦେଇ ଅଳପ ହସି ଓହ୍ଲାଇ ହେ । ସୁଜନେ । ୪ । ବଳଦେବ ଠାକୁରଙ୍କୁ ଆଗେ କରି ପଛେ ବଳସ୍ୱ ମହାବୀର୍ଯ୍ୟ୮ ଅଶ୍ରୁ ପୁଲକ ହୁଏ ଗଦ୍ଗଦ୍ ଗଦ୍ଗଦ୍ । ଅହା ସେ ଭବନା ଭକ୍ତଜନ ମନ୍ଦ ସ୍ତମ୍ଭିତେ ଅନ୍ତର କୋହ ହେ । ସୁଜନେ । ବଳେ କରି ସିଂହାସନ ଉପରେ । ସେହି ଉଲାଗି ହୋଇଲେ

୧ଅନ୍ତମ୍ବରରେ । ୨ଆକାଶରେ । ୩ପ୍ରତିଧ୍ୱନି । ୪ଦେବତାମାନେ । ୫ଇନ୍ଦ୍ରଙ୍କଠାରୁ । ୬ଖାଇବେଳେ । ୭ତିନିଲୋକ । ୮ବେଶ ଉତାର ।

Digitized by srujan ka@gmail.com

ଛତ୍ରରେ । ମହାସ୍ନାନ ଶାନ୍ତ ସୁବେଶ ବଢ଼ାଇ ବଜେ କଲେ ମଣ୍ଡପରେ ହେ । ୫ । ଷଡ଼ରସେ ଶ୍ରୀଗଣ୍ଡି ଭୋଗ କରନ୍ତି ଭୁକ୍ତଶେଷ ପ୍ରଭୁ ଜଗନ୍ନିତା । ବଚନରେ କେ ବ୍ରେତ କହିବ ତା । ମହାସୂପକାରେ ମହାଯତନରେ କରଥାନ୍ତି ସୁରମ୍ୟତା ହେ । ସୁଜନେ । ଖୀରୀ ଖେଚଡ଼ୀ ଦିବ୍ୟ ବ୍ୟଞ୍ଜନାଦି । ସେହିମାନ ସେ ପାଉନ୍ତି ସର୍ବାଦି । ନେହିଲେ କପା ଅନୁକମ୍ପା[୧] କରନ୍ତ ତାଙ୍କୁ ପରମ ପ୍ରମୋଦୀ ହେ । ୬ । ଅତମନ ସାର ବଢ଼ିଆଲାଗିରେ ବଳପ୍ୱ ବମଳାବଲ୍ଲଭ । ସବୁ ସୁଖ ହୋଇଅଛୁ ସୁଲଭ । କେବଳ ନୋହୁଛୁ ଚଞ୍ଚଳା[୨] ଚଞ୍ଚଳନେତ୍ରାନ୍ତ ଗୃହାଣି ଲାଭ ହେ । ସୁଜନେ । ଯାଇ ଯହୁଁ ଜିଲେ ଦିବ୍ୟ ପଲଙ୍କେ । ତନୁ ଅତନୁ[୩] ଶରୀରେ ଚମକେ । ପ୍ରକୃତ ସେବକେ[୪] ଯେ ଯାହା ଯେହାରେ ରହୁଲେ ଗଢ଼େ ନିଃଶଙ୍କେ ହେ । ୭ । ସୁର ନରମାନେ ମହାତୋଷମନେ ଶ୍ରୀନଗରରୁ ବାହୁଡ଼ିଲେ । ସିଂହଦୁଆରେ କପାଟ ପଡ଼ିଲେ । ଦଣ୍ଡଅଧିମାନେ ଦଣ୍ଡ ଦେବା ଅଶେ ବସୁଦ୍ଧରଙ୍କୁ[୫] ଲୋଡ଼ିଲେ ହେ । ସୁଜନେ । ଠାବେ ଠାବେ ଲୋକେ ସୁଖେ ରହିଲେ । ଠାକୁରଙ୍କ ବଜେ ଗୀବ କହିଲେ । କେଉଁଠାରେ ଗୀତ ନୃତ୍ୟରେ ଉନ୍ମତ୍ତ ହୋଇ ଗତ ପୁହାଇଲେ ହେ । ୮ । ପ୍ରାତଃସମୟେ ଦୀନବନ୍ଧୁ[୬] ପ୍ରକାଶ ଶ୍ରୀମୁଖପଦ୍ମ ବକାଶଇ । ଜନମନ-ଚକ୍ରବାକ ହସାଇ । ପନ୍ଥାର ନାଶ ହୋଇ ଯିବାରୁ ସୁଗତିବାଟ[୭] ଦିଶଇ ହେ । ସୁଜନେ । ନିତ୍ୟକର୍ମ କଷ୍ଟେ କଷ୍ଟେ ବଢ଼ାଇ । ମୁଣୋହିରେ ବଳସ୍ପ କଲେ ଯାଇ । ବବଧବନେ ଘନବାଦ୍ୟ[୮] ବାଜିଲ୍ଲ ଘନେ[୯] ଘନଘନ[୧୦] ହୋଇ ହେ । ୯ । ତେତେବେଳେ ମନ ଯାହା ହୁଏ ତାହା କାହାଗେ କହିବ କେ ଅଛୁ । ଅଛୁ ଯେ ଦେଖି ହୃଦରେ ହୋଇଛୁ । ସେ ଯେତେ

---

୧ ଦୟା । ୨ ଲକ୍ଷ୍ମୀ । ୩ କନ୍ଦର୍ପ । ୪ ସେବାରେ ନିଯୁକ୍ତ । ୫ ଶ୍ରେଷ୍ଠମାନଙ୍କୁ । ୬ ଦୀନବନ୍ଧୁ = ଜଗନ୍ନାଥ । ଦିନବନ୍ଧୁ = ସୂର୍ଯ୍ୟ । ୭ ମୁକ୍ତିପଥ । ୮ ମହାଘଣ୍ଟା ଘଣ୍ଟା କରତାଳ ପ୍ରଭୃତି ବାଦ୍ୟ । ୯ ନିବଡ଼ ରୂପେ । ୧୦ ପୁନଃ ପୁନଃ ।

Digitized by srujan ka@gmail.com

ଦେଖିଲେ ଚନ୍ଦ୍ରଙ୍କର ସ୍ୱାଦୁ ଚକୋର ପକ୍ଷୀ ଜାଣିଛି ହେ । ସୁଜନେ ।
ସବୁ ହୃଦୟ ହୃଦୟ ନୁହଇ । ଏହିଠାରେ ଶୁଣ ତାହା କହଇଁ ।
ଚନ୍ଦ୍ର ଦର୍ଶନେ ଚନ୍ଦ୍ରମଣି ବାହାରେ ଝରଇ ପାଷାଣ ଦ୍ରବଇ ହେ ॥
ଟେଗ ପିଷ୍ଟଇ ବନ୍ଦାପନା ବଢ଼ାଇ ବଇସ ବଡ଼ ଅବକାଶେ । ଜନେ
ଦର୍ଶନ କରନ୍ତି ହରଷେ । ବାଞ୍ଛାନଥ ବାଞ୍ଛାମାନ ପୂର୍ଣ୍ଣ କଲ ଗୁଣ୍ଡିଚ୍ଛ ଯବ-
ଚଢ଼େ ହେ । ସୁଜନେ । ବଡ଼ ଗହଳ ବଡ଼ଦାଣ୍ଡ ଯାକ । ଏକା ଜଣା ବା
ଲାଗିଲା ଅନେକ । ବାରନାରୀ ପ୍ରିୟେ ବେଶ୍ୟ ଆଦି ନାନା ସ୍ୱର
ବହନ୍ତି ଲୋକ ହେ । ୧୧ । ଚେଡ଼ି କେଶ ବନ୍ଧନ କୁଣ୍ଡଳାଦି କର୍ଣ୍ଣେ
ମର୍କତ କଣ୍ଠେ ମଣି । ମହା ଛମଛାସ ମୋହନ୍ତିଣୀ ୨ । କେୟୂର ୨
କଙ୍କଣ ଅଙ୍ଗୁଳିଭୂଷଣ ହାର ପଦକ କଙ୍କିଣୀ ହେ । ସୁଜନେ । ଦିବ୍ୟ
ଅମ୍ବରମାନଙ୍କରେ ୩ ଶୋଭା । ଦୂରୁଁ ଦେଖିଲେ ଜନମନ ଲୋଭ ।
ଦିବ୍ୟ ଦିବ୍ୟକେ ଦୂରୀଭୂତ କରନ୍ତି ଚାରୁ ଇନ୍ଦ୍ରିୟ ପ୍ରଭା ହେ । ୧୨ ।
ଚୁଆ ଚନ୍ଦନ କୁଙ୍କୁମ ଆଦି ଦେହେ କୁସୁମରେ ଶୋଭା ଦିଶନ୍ତି । ଉଚ
ଉଚକାମାନେ ୪ ବସିଛନ୍ତି । ଧନୀ ପୁରୁଷମାନଙ୍କୁ କର ଝୋଳି ବଦଯ
ରସ ଦେଖାନ୍ତି ହେ । ସୁଜନେ । ଦିବ୍ୟାଞ୍ଜନ ସିନ୍ଦୂରେ ମଣ୍ଡିତ ।
ଫୁଲ ତାମ୍ବୁଳରସେ ଅଖଣ୍ଡିତ । କାମ ବଶ ହୋଇ ଚଉ ବଉ
ଜୋନ ମୋହ ହୁଅନ୍ତି ପଣ୍ଡିତ ହେ । ୧୩ । ନାଗର କୃଷ୍ଣଚନ୍ଦ୍ର ପଡ଼ି
ଧାଇଁରେ ଏକା ହେଉଛନ୍ତି ବେଗରେ । କେତେ କହିବ ତାହା ବଚ-
ନରେ । ଦିଶୁଛି ଅନେକ ପ୍ରକାରେ ରୂପକୁ ପସରାମାନଙ୍କ ଠାରେ
ହେ । ସୁଜନେ । ଭଙ୍ଗ ହୋଇବ ଦ୍ରବ୍ୟ ପ୍ରସଙ୍ଗ । ଏହି ପେନ ଲାଗିଲ
ତହିଁ ରଙ୍ଗ । ଚେତଣ ବଚ୍ଛେଦ ହୋଇଅଛି ଅଭେଦ ଘନ ବିଦ୍ୟୁ
ଅଙ୍ଗ ଧରି ୬ ହେ । ୧୪ । ଜଗମୋହନ ବନ୍ଦ୍ର ଜଗମୋହନୀ ଯୁଗ ସମ
ଦିନ ଜାଣିଲେ । ବଷମୁକୁ ଦେଶ କରି ଗୁଣିଲେ । ତେଣ ବନ୍ଧନ ଅଶନ୍ତି

୧ ବେଶ୍ୟା । ୨ ତାଡ଼ ବୀଜ ପ୍ରଭୃତି । ୩ ବସ୍ତ୍ରମାନଙ୍କରେ ।
୪ ପଦୀନପ୍ତନାଏ । ୫ ଜଗନ୍ନାଥ ପ୍ରତିମା । ୬ ଜଗନ୍ନାଥ ଓ ଲକ୍ଷ୍ମୀଙ୍କର
ଘନ ଓ ବିଜୁଳୀ ପରି ଅଭେଦ ଅଙ୍ଗସଙ୍ଗ । ୭ ସ୍ନେଗନା ।

Digitized by srujan ka@gmail.com

ବାସବୃନ୍ଦ ଅପାର କର ଗଣିଲେ ହେଁ । ସୂଜନେ । ତଥି୧ ଅଗ୍ରବେ୨
ତଥୁଁରେ୩ ଅଗ୍ରବ୪ । ତଥୁରତା୫ ବଚନେ କେ କହିବ । ତଥୁ
ସମ୍ପେ ବନ୍ଧୁସଙ୍ଗ ଉଜିଲେ ଚିଥୁଗଣ୍ଡି୬ ଦିବ୍ୟସ୍ୱରୂପ ହେ । ୧୫ ।
ଜକାର ବମଳା ସଂଖ୍ୟାକ କମଳା କହିଲେ ସକଳ ଚରିତ । ସଖି
ଶୁଣିଲେ ଚିତ୍ତ ନିର୍ବାଣ । ବରଷା ପ୍ରକାଶୀ ହେଲେ ସୁଖସଙ୍ଗି୮ ପ୍ରମୋଦ
କର ଜଗତ ଲୋ । ସଜନି । ଯେ ଯାହାର ହୁଏ ଚିତ୍ତ ପରବାସୀ । ତାରେ
ହେଲେହେଁ ତ ତାକୁ ପରଶୁଁ । ମହତ ତବେକ ପ୍ରଭୁ ହେଲେ ନାଁ
ଏତେ ଅବଧି ତେଜୁର ଗୋ । ୧୬ । କେବେ ବେବେଳେ ଏହି ପ୍ରକାରେ
ନ କହି ବରଷାରେ ସଙ୍ଗ କରନ୍ତି । ମୌର ସବୁ ଶ୍ରେଣୀ ସୁଖ ହରନ୍ତି ।
ଛ ଛ କରୁ ପୁଣ ଘୃଣବାଣୀ କହି ଶୋକସାଗରୁ ତାରନ୍ତି ଗୋ ।
ସଜନି । ମୋର ହୃଦୟ ତ ଅଟି ସରଳ । ଅନାଇଲେ ସେ ଶ୍ରୀମୁଖ-
ମଣ୍ଡଳ । ଦୁଃଖ ନାଶ ଯାଇ ସୁଖ ଜାତ ହୋଇ ଆନନ୍ଦ ହୁଏ ପ୍ରବଳ
ଗୋ । ୧୭ । ପ୍ରତ୍ୟୁ୯୦ ନ ରହିଲେ ନ ରହାଇ ଭଲେ ପଞ୍ଚଗୃହୀମାନ
ମହିମା୧୧ । କାନ୍ତ କାନ୍ତାଚ୧୨ ସବୁ ସୁଖସାମୀ । ଗଣିଗ୍ରାହୀ ଗୁଣ କଲେ
ଥରୁଷଣ ରହେ ଭ ଗୁଣ ଗଣମା୧୩ ଗୋ । ସଜନି । ଗୁଣାଗୁଣିରୁ
ନାହିଁ କିଛି କାର୍ଯ୍ୟ । ପ୍ରଭୁ ପ୍ରସଙ୍ଗ ସବୁରୂପେ ଥାପିବ । ନାୟକ ସଙ୍ଗ୧୪
ବଇଗଗ୧୫ ବେଶରେ ବଥ୍ୟ ବଳତା ସଙ୍ଗ ଗୋ । ସଜନି । ୧୮ ।
ଦେଖ ଦେଖ ଲତା ହେଲେହେଁ ଜଡ଼ତା ତରୁମାନଙ୍କୁ ନ ଛାଡ଼ନ୍ତି ।
ଏ ସମୟ ଗୋ ସଖି ଏହିମତି । ପଯୋଜିନୀବ ବସା କରି ଏ ବରଷା
ମହାସୁଖରେ ବଞ୍ଚନ୍ତି ଗୋ । ସଜନି । ଦେଖ ପ୍ରଫୁଲ୍ଲିତ ମଧୁପାଣ୍ଡବ୧୬
ଶିଖୀ ଶଙ୍ଖୀ୧୭ ଯେ କରନ୍ତି ତାଣ୍ଡବ୧୮ । ଜାଣୁ ନାଁ ଥିଲି ଏ ଜଳଦ

---

୧ ବୃନ୍ଦ, ଜଗନ୍ନାଥ । ୨ ଚନ୍ଦ୍ରଦେବରେ । ୩ ଚନ୍ଦ୍ର ଠାରେ । ୪ ଅସ୍ନେହ ।
୫ କାତରତା, ବନ୍ଧତା । ୬ କର୍ପୂର ଗୁଣ୍ଡି । ୭ ଅତ୍ୟନ୍ତ ସ୍ନେହ ।
୮ ଆନନ୍ଦ ସାଗର ଜଗନ୍ନାଥ । ୯ ଧର୍ମତ୍ର । ୧୦ ସ୍ୱାମୀ । ୧୧ ମହତ୍ତ୍ୱ ।
୧୨ ଘାଂପିଧାର । ୧୩ ଗୌରବ । ୧୪ ସ୍ନେହ । ୧୫ ଅସ୍ନେହ । ୧୬ ଅଳୁନ-
ବୃକ୍ଷ । ୧୭ ମୟୂର । ୧୮ ନୃତ୍ୟ ।

Digitized by srujan ka@gmail.com

ସମସ୍ତେ ହରିବ ମୋତେ ଦଣ୍ଡିବ ଗୋ । ୧୯ । ଦେଖ ଏ ବକୁଳ ମୂଳ କୋଳେ ମିଳି ବିହାର କରନ୍ତି ସନ୍ତତେ । ଏହିରୂପେ ଉତ୍ତମ କାନ୍ତା କାନ୍ତେ । ଜଗତି[2] ଅଟେଇ ମହାସୁଖ ବହି କ୍ରୀଡ଼ା କରନ୍ତି ଏକାନ୍ତେ ଗୋ । ସଜନି । ମୋହ ପରାଏ ଦିବସ ରଜନୀ । ପ୍ରଭୁ ମୁଖ ନ ଦେଖିଲେ ସଜନି । କର୍ମେ ଯାହା ଥାଇ ଅବଶ୍ୟ ଭୁଞ୍ଜଇ ମାଂଯୂରେ ତାହା ନ ଯେନ ଗୋ । ୨୦ । ଦେଖ ଚନ୍ଦ୍ର ସୂର୍ଯ୍ୟ ଆପଣା ଷଉର୍ଯ୍ୟ ବଳୁଛନ୍ତି ତିନି ବ୍ରହ୍ମାଣ୍ଡେ । ପୁଣି ପଡ଼ନ୍ତି ତମସ୍କ ଗ୍ରହ ତୁଣ୍ଡେ । କାଳଚକ୍ର ଯାର୍ତି କା ଠାରେ ନ ପଡ଼ି କାହାକୁ ଅବା ନ ଦଣ୍ଡେ ଗୋ । ସଜନି । ଦେଖ ମହାଭୂତିଦାତା[3] ଈଶ୍ୱର[4] । ଖଣ୍ଡେ କପାଳ[5] ଧରିଛନ୍ତି କର । ଦିଗମ୍ବର[6] ହୋଇ ଶ୍ମଶାନରେ ଥାଇ ସେ ପୁଣି ବଶ କର୍ମର ଗୋ । ୨୧ । କର୍ମଠାରୁ ଫଳ ଗଙ୍ଗାଠାରୁ ଜଳ ଦଇବଠାରୁ ବଳ ନାହିଁ । କେତେ କହିବ ଏହା ପ୍ରାଣସହି । ଯାହା ପ୍ରାଣନାଥ ଶଙ୍ଖଚକ୍ରହସ୍ତ ସେ ହୁଏ ବରଦେ ଦହି ଗୋ । ସଜନି । ଏହା ବଚନ ହୃଦ ହୁଏ ଯାହା । ସେହି ସିନା ଜାଣଇ ସଖି ତାହା । ମାନହୀନ ହୋଇ ରହି ନ ପାରଇ କେ ସହି ପାରିବ ତାହା ଗୋ । ୨୨ । କମଳଲୋଚନା ବୋଲନ୍ତି ଶୋଚନା ନ କର ଠାକୁରାଣୀ ମାଏ । ତୁମ୍ଭଠାରେ ତାଙ୍କର ମହାଆସ୍ଥେ । ଏ ଶ୍ରୀମୁଖ ଚାହିଁ ଥିବୁଁ ବୋଲି କହି କହି ଚଳନ୍ତି ସେ ପାଏ ଗୋ । ସଜନି । ତୁମ୍ଭେ ହେଲେହେଁ ଜଗତ-ଜନନୀ । ଯିବେ ଅବା କେମନ୍ତେ ସଙ୍ଗ ଘେନି । ବ୍ରହ୍ମାଦି ଶଙ୍କର ଯାହା ଚରଣରେ ଅଛନ୍ତି ପୂରି ମେଦିନୀ ଗୋ । ୨୩ । ତୁମ୍ଭେ ରତ୍ନାକରନନ୍ଦନୀ ତୁମ୍ଭର ପ୍ରାଣବଲ୍ଲଭ ଜଗନ୍ନାଥେ । କୋଟି ଇନ୍ଦ୍ର ପଦବୀ ତୁମ୍ଭ ହାତେ । ଲୋକଙ୍କ ସୁନ୍ଦରୀ ହେଲେ ଅସୁନ୍ଦର ତୁମ୍ଭେ ଯାଅନ୍ତି ସ ରଥେ ଗୋ । ସଜନି । ତୁମ୍ଭେ ଏବେ ଏ ଉଦବେଗ ନୁହ । ମୋର ଯାଇଁ ଆସିବା ଯାଏ ସହ । ସେ ତୁମ୍ଭ ବରଦେ ଜଣାଇଲେ ସ୍ନେହେ ଥିର କର ଥିବ

---

୧ ବର୍ଷାକାଳରେ । ୨ ଅଟ୍ଟାଳିକା । ୩ ଐଶ୍ୱର୍ଯ୍ୟଦାତା । ୪ ଶିବ । ୫ ମନୁଷ୍ୟ ମୁଣ୍ଡର ଖପୁରି । ୬ ଉଲଙ୍ଗ ।

Digitized by srujan ka@gmail.com

ହେବ ଗୋ । ୨୪ । ଚନ୍ଦ୍ରମା ବାହାରେ କେତେହେଁ ଉପରେ ଚକୋର ଧଇର୍ଯ୍ୟ ଧରଇ । ମେଘ ନ ଥିଲେ ଚାତକ ଜରଇ । ମକରନ୍ଦ ଦଣ୍ଡେ ନ ପାଇଲେ ଚଣ୍ଡେ ଭ୍ରମର ପ୍ରାଣେ ମରଇ ଗୋ । ସଜନି । ତୁମ୍ଭ ସଙ୍ଗ ନ ପାଇ ଚଉବାହା । ଆସିବାକୁ ହେଉଥିବେ ଉତ୍ସାହା । ଚହୁଁଥିବ ବାଟ ଚାଲି ପଡ଼ିଲେଟି ହେବେ ତୁମ୍ଭ ପ୍ରାଣନାହା ଗୋ । ୨୫ । କାମ ଉର୍ଦ୍ଧବାହୁ ହୋଇ ଚାହୁଁ ଚାହୁଁ ଓଠାଗ୍ର ଅଣିବ ତାହାଙ୍କୁ । ସେ ଯେ ଉପ୍ରୋଧ ନ କରେ କାହାକୁ । ଶତ୍ରୁ ଅସ୍ତମସ୍ତ କୁଟିଳ ହୃଦୟ ପ୍ରାୟେ ବିୟୋଗ ଯାହାକୁ ଗୋ । ସଜନି । ମାଳାକାର ଫୁଲକୁଳ ପାଳଇ । ସ୍ନେହେ ଜଳ ଦେଇ ଫୁଲ ତୋଳଇ । ଅଙ୍ଗାରକ[୧] ଅଗେ ଚନ୍ଦନ ପଡ଼ିଲେ ଦଣ୍ଡକେ କାଠି ଜାଳଇ । ଗୋ । ୨୬ । ମୋହନ ଶପଥ ଏ ଶ୍ରୀମୁଖେ ଲଜାଏ ପ୍ରସନ୍ନ ନ କର ଅନ୍ତର । ଏତେ ବୋଲି ନୟନୁଁ ପୋଛି ନୀର । କରେ କର ଧରି ପ୍ରବୋଧନ କରି ବେଗେ ହୋଇଲେ ବାହାର ସେ । କମଳା । ଉଦୁମ୍ବରୁ[୨] ମଣ୍ଡପକୁ ଚଳିଲେ । ମହାପ୍ରଭୁଙ୍କ ଛାମୁରେ ମିଳିଲେ । ଖଣ୍ଡେଦୂରୁଁ ଦେଖି ପ୍ରଭୁ ପଦ୍ମଆଖି ହୃଦପଦ୍ମରେ ଭାଳିଲେ ସେ । ୨୭ । ଶିରେ କର ଦେଇ ହସ ହସ ହୋଇ ଅପସର ରହି କମଳା । ଚାହିଁ ବୋଲନ୍ତି ପ୍ରଭୁ ଚକାଡୋଳା । ନ କହିଲେ ତୁମ୍ଭ ଭେଟରୁ ହେ ଅମ୍ଭ ବେଭାର ଗଳ୍ପଣି ଭୂଲା ଗୋ । କମଳା । ସେବ ପ୍ରକାରେ ଅମ୍ଭ ଆଜ୍ଞା ଦୋଷ । ନ କହିଲେ ତୁମ୍ଭର ସନ୍ତୁଷ । ଯେଁ ଯେସନ ନିଜ ବାରଣେ[୩] ବାରଣରେ[୪] ବାରଣ[୫] କରେ ଅଙ୍କୁଶ ଗୋ । ୨୮ । ତୁମ୍ଭେ ତ ଜାଣ ଯେ ଅମ୍ଭ ପଞ୍ଚପ୍ରାଣ ନ କହି ତାହାଙ୍କୁ ଥଇଲୁଁ । ନ ଜାଣିବା ଦୋଷ ଅମ୍ଭେ ପାଇଲୁଁ । ବଚନ କୁଷ୍ଠା ହୋଇ ଅଭୂଷଣ କଥାହିଁ ଭୂଷଣ କଲୁଁ ଗୋ । କମଳା । ଏବେ କ କରି ତାହାଙ୍କୁ ଚାହିଁବୁ । କେଉଁ ପ୍ରକାରେ ବିନୟ କହିବୁ । କହ ଏ ଘଷପୃ-ସଙ୍କଟୁ ଅବଶ୍ୟ କେଉଁ ରୂପରେ ହୋଇବୁଁ ଗୋ । ୨୯ । କହ ତାଙ୍କ

---

୧ ଅଙ୍ଗାର କରିବା ଲୋକ । ୨ ଦ୍ୱାରଦେହଳୀରୁ । ୩ ନିଷେଧ । ୪ ହସ୍ତିଠାରେ । ୫ ଅଘାତ ।

Digitized by srujan ka@gmail.com

ଶୁଭ ସୁଲଗ୍ନ ସନ୍ଦେଶ ଶୁଣି ଶ୍ରବଣ ହେଉ ସୁଖୀ । ଏବେ ତ ଜଗତ
ସେ ହେଲେ ଦୁଃଖୀ । ଏହି କଥା ଶୁଣି ନ ସରେ ଜଗତୀ ବିବସେ
ହୃଦେ ତା ଲୋଟି ଗୋ ! କମଳା । ଏବେ ତହୁଁ ଖରଶ୍ୱାସ ଛାଡ଼ିଲେ ।
ପ୍ରିୟ ଦୁଃଖ ମନରୁ ନ ଛାଡ଼ିଲେ । ବୋଲେ ଦୀନକୃଷ୍ଣ ଏହି ସମୟରେ
କମଳା କ୍କ ରଯୋଡ଼ିଲେ ହେ । ସୁଜନେ ! ୩୦ ।



## ଦ୍ୱାଦଶ ଛାନ୍ଦ ।

### ରୁକ୍ମିଣୀ ଚଉତିଶା ବାଣୀରେ ।

ଶୁଣିବା ଜଗଜ୍ଜ୍ୟୋତି ତ୍ରୈଲୋକ୍ୟ ଅଧିପତି ତୁମ୍ଭେ ସକଳ ସୁଖରାଶି । ରତ୍ନାକରନନ୍ଦନୀ ସୁର୧ ନର ବନ୍ଦନୀ ତୁମ୍ଭର ସେ ପାଦ୍ମହସ୍ତୀ ହେ । ମହାପ୍ରଭୁ ! ତାଙ୍କୁ ଅପୂର୍ବ କେଉଁ ସୁଖ । ଅପୂର୍ବ ଏକା ପଦ୍ମମୁଖ । ଏହି ଯେତେ ଦୁଃଖରେ ଭ୍ରମୁଛି ଜଗତ୍ତ୍ରେରେ ତାହାଙ୍କ ମନ ପଞ୍ଚକାନ୍ତ ହେ । ୧ । ଖେଳ କଲା ଦିନରୁ ବଧୂଘର୨ ଅଙ୍ଗରୁ ବାହାରୁ କୁନ୍ଦଳ ସନ୍ତାପ୩ । ଅନେକ ଶୀତକର୪ ଉପଚାର ଓହୋର କୁହେ କାମାଗ୍ନି ଅବା ଲୋପ ହେ । ମହାପ୍ରଭୁ । ତୋଳା ତୋଳି ପଙ୍କଜ ପତ୍ର । ସଗେଜ ହେଲେକି କହେ୫ । ବଣିଜାର ପଣ୍ଡାଗମାନେ ଅବ୍କାଶ ଦଗ୍ଧ୬ କଲ ଚନ୍ଦ୍ର୭ ଚନ୍ଦନୋ ମାତ୍ର ହେ । ୨ । ଏତେବେଳେ ତପନ ନୋହୁଲା ସମାପତ ଅଉ ବ ଦେବ ମୁଁ ଅଣାଇ । ଜଳଯନ୍ତ୍ରମନ୍ଦିରେ ପଦ୍ମବଣସ୍ଥଳରେ ଥୁଅଇ ଅଗନ୍ଧ ଜଣାଇ ହେ । ମହାପ୍ରଭୁ । ଏବେବେଳେ ଧୃନ୍ଦ ଯେ କରୁ । ପ୍ରଭୁ ଙ୍କୁ କାହିଁ ନା ଉତ୍ତର । ଯେଉଁ କାଳେ ବଦେଶୀ ଗୁଣ୍ଡି ମିଳନ୍ତି ଅଛି ସେକାଳେ ଗୁଣ୍ଡିଗୁ ବହାର

୧ ଦେବତା । ୨ ବଶେଷ ପାଣ୍ଡୁରବର୍ଣ୍ଣ । ୩ ଉଷ୍ଣତା । ୪ ଶୀତଳକାରକ । ୫ ପଦ୍ମସ୍ଥାନ । ୬ ଶୂନ୍ୟ । ୭ କର୍ପୂର ।

Digitized by srujan ka@gmail.com

ହେ ।୩। ନୋହିଲେ ତପ୍ତ ଚମ୍ପା ଶମ୍ପା୧ ହେମ୨ ହସନ୍ତା ସୁବର୍ଣ୍ଣ୩ ବର୍ଣ୍ଣ୪ ଦିଶନ୍ତା । ପୂର୍ଣ୍ଣଚନ୍ଦ୍ର ମଣ୍ଡଳଜିତ ମୁଖମଣ୍ଡଳ ଉରଜ ଉପରେ ବସନ୍ତା ହେ । ମହାପ୍ରଭୁ । ଘନକୁଟିଳ୫ କେଶପାଶ । କଳାଭ୍ରମରେ ଉପହାସ । ଏବେ ସେ ସୁମଜ୍ଜନ୬ ବେଶ ହୋଇ ନାଶ ବହନ କରଇ ମାନସ ହେ ।୪। ବିମ୍ବ୭ ବଧୂଳି ଛାର କରେ ଯେଉଁ ଅଧର ସେ ଏବେ ହାସକୁ ଛାଡ଼ିଲା । ଜ୍ୟୋତିଧର୮ ମୁକୁତା ହସ ମାଣିକ୍ୟ ଜିଣା ଦଶନେ ନୀରସ ପଡ଼ିଲା ହେ । ମହାପ୍ରଭୁ । ଯେଉଁ ବଚନ ସମ ପାଇ । ସରସ୍ୱତୀ ବୀଣା ଶିଖଇ । ଗୁରୁ କର ବସନ୍ତକାଳରୁ ପରଭୃତ୯ କୁହୁ କୁହୁ ମାତ୍ର ହୁଅଇ ହେ ।୫। ଏବେ ସେ ସ୍ୱରଭଙ୍ଗ କୃଶ ପାଣ୍ଡୁର ଅଙ୍ଗ କମ୍ପପୁଲକ ସ୍ୱେଦ୧୦ ଜାତ । ଅଶ୍ରୁପୁଲକ ଦେଖି ଧଇର୍ଯ୍ୟ ନୁହେ ରଖି କେତେ କହୁଛ ସେ ଚରିତ ହେ । ମହାପ୍ରଭୁ । ମୋହ ଯିବାକୁ ଅବେ ଗୃହୁଁ । ଯତନେ ମଣନ୍ତି ଦଣ୍ଡକହୁଁ । ଏହୁକ୍ଷଣି କଳପ କରବେ ଦେବଗଣେ କେତେ ଯେ ଅଛି ଅଛୁ କହୁ ହେ ।୬। ପ୍ରଭୁ ବୋଲନ୍ତି ଏହୁରୂପେ ଗୋ ପ୍ରାଣହୁ ଯାଉଁ କହୁଲେ ସେ ପ୍ରମାଣ । ସ୍ନେହକେହେଁ ଅନ୍ତର ନାହିଁ ତାଙ୍କ ଅମର ପାଇ ନାହାନ୍ତି ସେ କ୍ଷଣ ଗୋ । ଆଗୋ ସଖି । ଏବେହେଁ ତୁମ୍ଭେ ବେଗେ ଯାଅ । ଥଇଲେ ବୋଲି ତାଙ୍କୁ କହ । ଯେମନ୍ତେ କୋପ ଜାତ ନୁହେ ସେରୂପେ ନନ୍ତ୍ର ପ୍ରବୋଧନା କର ମଣାଅଁ ଗୋ ।୭। କାଲି ଅବଶ୍ୟ ନୀଳଗିରିନଗରେ ହେଲ ଅବସାନ ସମ୍ଭେ ହେବ । ତୁମ୍ଭକୁ ଘେନ ତାଙ୍କ ହୃଦବେଦନାଯାକ ବଜାଇ କହ ବଜାଣିବୁ ଗୋ । ଆଗୋ ସଖି । ତୁମ୍ଭେ ତ କହିଲ ଅମ୍ଭଙ୍କୁ । ଅବଶେଷ ନୋହେ କହିବାକୁ । କେବଳ ତାଙ୍କ ପାଖେ ସ୍ଥିତିଲାବିନୁ ଲାଖ ହୋଇଲୁ କାମଵଶିଖରୁ୧୧ ଗୋ ।୮। ଶ୍ରୀମୁଖେ ଏତେ ଶୁଣି ଶିରରେ ହେଇ ପାଣି କମଳଲୋଚନୀ ଚଳଲେ ।

---

୧ ବିଦ୍ୟୁତ । ୨ ସୁବର୍ଣ୍ଣ । ୩ ଜଳ୍ମବର୍ଣ୍ଣ । ୪ ମଳିନ । ୫ କୁଞ୍ଚିତ । ୬ ପୁଷ୍ପ । ୭ ବିମ୍ବଫଳ । ୮ ଅତି ଉଜ୍ଜ୍ୱଳ । ୯ କୋକିଳ । ୧୦ ଝାଳ । ୧୧ କାମବାଣରୁ ।

Digitized by srujan ka@gmail.com

କ୍ଷୀରସାଗରସୁତା ଜଗନ୍ନାଥବନିତା ଶ୍ରୀମୂର୍ତ୍ତିରେ ଭୁଉଁଠେ ମିଳିଲେ ଯେ । ଅନ୍ୟେ ଜନେ । ପ୍ରସନ୍ନ ଦେଖି ସଜନୀର । ହୃଦେ ହରଷ ଅବତାର୧ । ଚମଲଁନେତ୍ରୀ ହସି ,ବୋଲନ୍ତି ପ୍ରଭୁ ଅସି ପ୍ରବେଶ ହେଲେଟି ତୁମ୍ଭର ଗୋ । ଅଗୋ ସଖି । ୯ । ଅଣ୍ଡା ଦେଲେ ଏତେହେଁ ତୁମ୍ଭେ ଯାଇଁ ବେଗେନ୍ଦେ ଅମ୍ଭ ବନ୍ଧେ ବାରତା କହ । କର ଯତ୍ନ ଏତେହେଁ କହିବ ଅମ୍ଭ ସ୍ନେହେ ମଣ୍ଡନେ କରବେ ଛେନେନ୍ଦ ଗୋ । ଅଗୋ ସଖି । ଏବେ ମାଜଣା ବେଗେଁ ସାର । ମଣୋହିରେ ବଜାୟ୍ୟ କର । ନାନା କୁସୁମେ ଗନ୍ଧ ମସ୍ତକେ କର ଶୋଭ୍ର ସୁମନମାଳକୁ୩ ଉଦ୍ଧର ଗୋ । ୧୦ । ଅର୍ଦ୍ଧଚନ୍ଦ୍ର ଦୂଷଣ ଲଲାଟରେ ଦୂଷଣ କର ସିନ୍ଦୂର ଅର୍ଦ୍ଧଚନ୍ଦ୍ରା । ମଦକଳ୪ଖଞ୍ଜନ ଗଞ୍ଜନ ନୟନରେ କଜ୍ଜଳ ଦେଉ ଉଜ୍ଜ୍ୱଳତା ଗୋ । ଅଗୋ ସଖି । ସୁରଙ୍ଗ ଅଧରକୁ ପାଉ । ତାମ୍ବୂଳ କୃତାର୍ଥକୁ ଯାଉ । ତିନଲୋକମଣ୍ଡନ୫ ନୟନ ବମଣ୍ଡନ୬ ଅଙ୍ଗେ ମଣ୍ଡନ୭ ମଣି ହେଉ ଗୋ । ୧୧ ।

ଶୁଣି ଅନନ୍ୟ ହସି ବୋଲନ୍ତି ପଦ୍ମବାସିନୀ୮ ସତ କହ ଗୋ ପ୍ରାଣସଖି । ବକ୍ଷ କୁଟେ୯ ନୟନ ଜାଣିବାକୁ ହୃଦୟ ସଂସାରମଧ୍ୟେଁ ନ ଦେଖି ଗୋ । ଅଗୋ ସଖି । ବଚନ ଅମୃତୁଁ ଅଧିକ । ନୀରଧି୧୦ କୂଳିଶୁଁ୧୧ ଅ[illegible] । ସୂର୍ଯ୍ୟଚନ୍ଦ୍ର୧୨ ଯେମନ୍ତ ଦେଖିବାକୁ ତେମନ୍ତ ଗତି୧୩ ଜାଣି ନ ପାରେ ଲୋକ ଗୋ । ୧୨ । ମୁଁ ତାହାଙ୍କର ପ୍ରିୟ ହେଲେହେଁ ତାଙ୍କ ମାୟା ଜାଣିବାକୁ ନୋହେ ଭରସା । ନୋହିଲେ ଏ ବରଷାକାଳେ ଏ ମୋର ଦଶା [illegible] ଧାଣ୍ଡା କରେ ଲୋକହସା ଗୋ । ଅଗୋ ସଖି । କହ କଷ୍ଟ [illegible] କଥା । ଶୁଣି ମୋ ମନ ଛୁଡ଼ୁ ବ୍ୟଥା । ଶ୍ୟାମସୁନ୍ଦର ଅଙ୍ଗ ହୋଇ ତାହିଁ ନାଁ ଭଙ୍ଗ ଥାଉ ଲୋଡ଼ିବା ସ୍ୱବୁକଥା ଗୋ । ୧୩ ।

---

୧ ତାର ହେଲା । ୨ ଭୂଷଣ ହେବାରେ । ୩ ଫୁଲମାନଙ୍କୁ । ୪ ମତ୍ତ ହୋଇ ଧ୍ୱନି କରବା । ୫ ତ୍ରିଲୋକ ଅଳଙ୍କାର । ୬ ଜନନଦ୍ୟନର ଭୂଷଣସ୍ୱରୂପ । ୭ ଭୂଷିତ । ୮ ପଦ୍ମବାସିନୀ ଲକ୍ଷ୍ମୀ । ୯ କପଟ । ୧୦ ନିଷ୍ଠୁର ଭଷଣରେ । ୧୧ ବଜ୍ରରୁ । ୧୨ ଚନ୍ଦ୍ର ସୂର୍ଯ୍ୟ । ୧୩ ସ୍ୱରୂପ ।

Digitized by srujan ka@gmail.com

ସବୁ ବେଶ ଭଞ୍ଜନ ଶ୍ରୀମୁଖ ଦରଶନ ସବୁ ସମ୍ପତ୍ତି ମୋର ସେହୁ ।
ଘନଗର୍ଜେ ଚାତକ ନ ପାଇ ଜଳ ଯାକ ସୁଖକୁ ବହଇ ସେ ନାହିଁ
ଗୋ । ଅଗୋ ସଖି । ପାଇଲାମାତ୍ରେ ବସନାକୁ । ତକୁ ଧରନ୍ତ ପଞ୍ଚବକୁ ।
କ ଢ କରି କୁମୁଦ ଝୁଡ଼ଇ ତାର ଦେ୨ ଚନ୍ଦ୍ରମା ଉଦୟକାଳକୁ ଗୋ ।।
ଯେତେବେଳେହେଁ ରଥେ ବିଜିବେ ପ୍ରଭୁ ପଥେ ସବୁ ସୁଖସମ୍ପତ୍ତି ହେବ ।
ସପତସ୍ୱରୁଁ୩ ରାଗ ଜନ୍ମିଲା ପ୍ରାୟେ ରାଗ୪ ଅନନ୍ତ ଭାବକୁ ପାଇବ
ଗୋ । ଅଗୋ ସଖି । କହନ୍ତି ବୋଲନ୍ତି କମଳାକ୍ଷୀ । ସଖୀଏ ନାହିଁ
କମଳାକ୍ଷି । ଦକ୍ଷିଣମୂର୍ତ୍ତି ସାର ରଥ ମଣ୍ଡଳି କର ତଳେ ଉଥାହା ପଡ଼ି
ଅଛୁ ଗୋ । ୧୫ । ଏହୁ ସମୟେ ଅଛି ଜଣାଏ ଏକ ଦାସୀ ଶୁଣିମା
ଠାକୁରାଣୀ ମାଏ । ନନ୍ଦିଘୋଷରେ ବସି ପ୍ରବେଶ ହେଲ ଅଛି
ପ୍ରାଣସ୍ୱାମୀ ପ୍ରଭୁ ଦେବରାଜ୍ୟ ଗୋ । ଅଗୋ ସଖି । ବାଟରେ ଥଇଲି ମୁଁ
ଦେଖି । ଗହଳ ନୁହଇ ଚଳେଖି । ଦୀନକୃଷ୍ଣ କହଇ ନୀଳାଦ୍ରୀଶଙ୍କ
ଅନାଇ ଅପଲକ ହୋଇଛୁ ଆଖି ଗୋ । ୧୬ ।

---

## ତ୍ରୟୋଦଶ ଛାନ୍ଦ । ରାଗ ମାଳଶ୍ରୀ ।

ଅଗୋ ବଡ଼ପ୍ରଭୁ ତାଳଧ୍ୱଜରେ । ମାଧ ଦେବୀ ତୁମ୍ଭ ପ୍ରଭୁ ପଛରେ ।
କରେ ଧରଛନ୍ତି ଧନୁ ଶରକୁ । କି ଦିଶୁଛନ୍ତି ଜଳଦ ହୂରକୁ । ଚ
କହନ୍ତ ତାହା ସେ କମ୍ପି ବାହା ଦିଶୁ ଅଛନ୍ତି ଯାହା । ତୁମ୍ଭ ଅଙ୍ଗ-
ସଙ୍ଗ ଭଙ୍ଗ କରନ୍ତୁ ତାହା । ୧ । ନାହିଁ ଗର୍ବରେଖା ସୁବର୍ଣ୍ଣ ତଡା ।
ଶିରଦ୍ୱେ ହୋଇଛନ୍ତି ଦୁର୍ବଳଟା । ହେଲେ ମାଳ ଚୂଳ ଅଙ୍ଗକୁ ଖଣ୍ଡା ।
ଲେ କବେଭାରକୁ ଅଛନ୍ତି ଧର । କେବଳ କର୍ପୂର ଅଳକାବଳୀଙ୍କ

---

୧ମେଘଜଳ । ୨ମୂର୍ଦ୍ଧିତଶ୍ରବ । ୩ବୀଣାରୁ । ୪ସ୍ୱେଦ୍ରା ଭା
ସୁକ୍ରୋଷ । ୧ଜଗନ୍ନାଥଙ୍କୁ ।

Digitized by srujan ka@gmail.com

କର୍ପୂର ତୁଲ ତା ଶୋହେ । କାମଦେବ ଦେଖି ଶ୍ୟାମ ହୋଇବ
ମୋହେ ।୨। ସାରଥି ରଥ ବାହୁଛି ଆଗରେ । ସୁବାତେ ଯେହ୍ନେ
ବୋଇତ ସାଗରେ । ପଡ଼ି ଅଛନ୍ତି ମହାଚଉଡ଼ଛାଟରେ । ମନ ଯାଇ ଅଛି
ତୁମ୍ଭପଠାଉ । ଗୁଲ ଏବେ ଅମ୍ଭେ ଦର୍ଶନ କରିବା ଜଗତା୧ ଉପରେ
ରହୁ ।୨ ମାଟେ ନୋଳନ୍ତି ଚଲ କହିଲେ ଗୋ ସହୁ ।୩। ଏତେ
ବୋଲି ଜଗନ୍ତରେ ଆଗେହୁ । ଗୃହୁଁଲେ ଦିଶ ନ ଦିଶଇ ମଧ୍ୟ ।
ପଡ଼ିଛି ତଡ଼ବାଣ୍ଡ୍ର ବଡ଼ ଭଡ଼ । ଠେଲାଠେଲି ପେଲାପେଲି ହାବୋଡ଼ା ।
ରଥ ଗଜ ଅଶ୍ୱ ବଳ ଯେହ୍ନ ବଶ୍ମୃର କରନ୍ତି ତଙ୍କଯେ । ଜନନ୍ତରେ
ମଣିମା ଡାକ ଜୟ ଜୟ ।୪। ସୁଘୋଷର ନାର ଗମ୍ଭୀର ବାଦ୍ୟ ।
ଶବଦେ ଛୁଟୁଅଛି କ୍ଷେତ୍ରପଦ୍ମ । ଘନ ଘନ ବାଜେ ବୀରକାହାଳୀ ।
ଶୁଭେ ମଙ୍ଗଳଗୀତ ହୁଳହୁଳି । ମଙ୍ଗଳ ପାଠ ଦ୍ୱିଜବରେ ପଢ଼ନ୍ତି
ସ୍ତୁତିପାଠ ପଢେ ବନ୍ଦୀ୩ । ବୃନ୍ଦାରକ୪ ବୃନ୍ଦେ ବେଢିଅଛନ୍ତି ବନ୍ଧୁ୫ ।
ଅପ୍ସରମାନେ କରନ୍ତି ନୃତ୍ୟ । ଅଞ୍ଜଳି ପୁଷ୍ପ ପଡେ ଅପ୍ରମିତ୬ ।
ରହ ରହ ହୋଇ ହରେ ସ୍ତୁରନ୍ତି । ଜୁର ଦେଇ ଚତୁର୍ବର୍ଗ ସମ୍ମିଶ୍ରି ।
ବଡ଼ଦାଣ୍ଡ ଅନ୍ତ ପାନ୍ଥ୭ ବାନ୍ଧି ଅଛି୮ ହୋଇ ରହୁ ସୀମନ୍ତିନୀମାନେ୯ । ମହା
ସୁଖେ୧୦ ଦେଖନ୍ତି ମହାସୁଖଧାମା୧୧ । ଶ୍ରୀମୁଖପଦ୍ମେ ନେତ୍ର ଭ୍ରମର ପଡ଼ି ।
ସ୍ନେହ ମଧୁରେ ଧାରଇ ଗୁଡି । ମନ ହୋଇ୧୨ ଶ୍ରୀଅଙ୍ଗ ଚମ୍ପାଳେ ।
ବନ୍ଧ ହୋଇ ଖସି ନହେ ନନ୍ଦଲେ । ଦେଖି ଜନମାନେ ହରଷିତ
ମନେ ଆନନ୍ଦେ କରନ୍ତି ସ୍ତୁତି । ଜୟ ଜୟ କମଳାଦେବୀ ପ୍ରାଣପତି ॥
ଦାସୀ ଦେବୀଙ୍କି କହନ୍ତି ମଣାଇ । ଶୁଣ ମା ମାଏ ସାବଧାନ ହୋଇ ।
ରହୁ ରହୁ ଯେ କରନ୍ତି ତର୍କଯେ । ଏହୁଟି ତୁମ୍ଭ ଅନୁରାଗ ଭୟେ ।
ରଥହୁଁ ପଢାନ୍ତି ବ୍ୟାଜେ କହେ ଏକା ମୋର କିଛି ଦୋଷ ନାହିଁ ।

---

୧ଅଟ୍ଟାଳିକା । ୨ଆକାଶ ଛୁଇଁଛି । ୪ଦେବତା । ୫ବନ୍ଦନା କର ।
୬ଅପରିମିତ, ଅନେକ । ୭ସୀମାବାରଣ ପାଠବସ୍ତ୍ର । ୮ସମୀପସ୍ଥ ।
୯ଲକ୍ଷ୍ମୀ । ୧୦ଅତି ଆନନ୍ଦରେ । ୧୧ଜଗନ୍ନାଥଦେବଙ୍କୁ ।
୧୨ମନପକ୍ଷୀ ।

Digitized by srujan ka@gmail.com

ପ୍ରଭୁ ଅଜ୍ଞାକୁ ମାତ୍ର ନେଇଥିଲି ବହୁ । ୮ । ବାହୁକ ଦର୍ଶନରେ
ଭୃଣ ଧରୁ । କର ଧରି କେଶ ମୁକୁଳ-କରି୧ । ସେହୁ ଗୁହାରି କରଇ
ଅଗ୍ରତେ । ନାହିଁ ଅପରାଧ ମୋର ଦଣ୍ଡ ମୋତେ । ମୁଁ ଅଗ୍ନିପାଳଙ୍କ
ଷଡାଚାରୀଙ୍କ୨ ମୋହ ବୁଦ୍ଧି ଥିବା କେତେ । ଏହା କହି ଅଛନ୍ତି
ଖଟଣୀ ସାମନ୍ତେ । ୯ । ଶୁଣି କମଳା ହୋଇ ହସହସ । କହିଲେ
ସେବକର ନାହିଁ ଦୋଷ । ତାଙ୍କୁ କାହିଁପାଇଁ କରବା ରୋଷ । ସେ
ବୋଇଲେ ଜଗ କର ପ୍ରକାଶ । ପ୍ରଭୁ ଅଜ୍ଞା କର ନୁହଇ ଅବଜ୍ଞା ଦାସ
ହୋଇ କରେ ଦୋଷ । ମାୟା ମୋହ କରଇ ପ୍ରଧାନପୁରୁଷ୩ । ୧୦ ।
ଅନୁରାଗ୪ ଥିଲେ ହୁଅଇ ମାନ । ଯେବେ ହେଲେ ବଡ କଥା ହୁଏ ସାନ ।
ଦେଖ ପରିଜନ ଭିତୁକୁଟ୫ ହରାଡ । ଚରଣ ମାତ୍ର କରେ କରେ ସାରବା ।
ଏବେ ଚାଲ ଅମ୍ଭେ ସମସ୍ତେହେଁ ଦମ୍ଭ କବାଟ ଦେଇ ରହିବା ।
କରତବେ୬ ଜଗଣ ବଚନ କହିବା । ୧୧ । ଏ ବୋଲନ୍ତି ପ୍ରଭୁ ତାହା
ଶୁଣିବା । ଅନୁରାଗ ଭାବ ତହିଁ ଜାଣିବା । ବୋଲନ୍ତି ଯେ ବନ୍ଦେଦରେ
ସେବେନହିଁ । ଲୁଚିବା ତାହା ଏହି ଠାରେ ରହଣ ତୁମ୍ଭେ ଏବେ ଦ୍ୱାରରକ୍ଷା
ଯାଇଁ କର ଜାଣିବା ପ୍ରଭୁଙ୍କ ଗତି । ଏବା ନୋହୁବ ତାଙ୍କ ଅଗ୍ରତେ
ଅପ୍ରୀତି । ୧୨ । ଏମନ୍ତ କହନ୍ତି କହନ୍ତି ଜଗଦୀଶ । ସିଂହଦ୍ୱାରେ
ହୋଇଲେ ପରବେଶ । ହସି ଅଜ୍ଞା ଦେଲେ ବଳେବରଙ୍କୁ୯ ।
କରିବା ହେଉ ଭିତରକୁ । ଶୁଣି ସାତପାଣି୧୦ ମହର୍ଷି ହଠାଣି ବନ୍ଦେ
କଲେ ଭିତରକୁ । ସେହୁ ଧୁମଧୂରେ ନେଲେ ଯେ ସୁଭଦ୍ରାଙ୍କୁ । ୧୩ ।
ପଛକୁ ରହି ପ୍ରଭୁ ଦେବଗଣ୧୧ । ହୋଇଲେ ଶ୍ରୀଶପ୍ରିୟା ସଙ୍ଗ ଭେଟ ।
ବାମ ଅନେକ ଦିନୁ ଥିଲା ପାଷି । ସେହୁ କାଳରେ ହେଲା

---

୧ବାଳ ଫିଟାଇ ଦେଇ । ୨ରଥବାହକ । ୩ପୁରୁଷୋତ୍ତମ ଜଗନ୍ନା-ଥଙ୍କ । ୪ସ୍ନେହ । ୫ଶୁଷ୍କାନ୍ନପାର୍ଶ୍ୱ ଶକ୍ତୁ । ୬ଶୀଘ୍ର । ୭ଶ୍ରେଷ୍ଠ । ୮କପଟରେ । ୯ବଳଭଦ୍ରଙ୍କୁ । ୧୦ବଳଦେବ । ୧୧ଦେବଗଣ ଜଗନ୍ନାଥ ।

Digitized by srujan ka@gmail.com

ସବ୍ୟ ଧାଚୀ୧ । ଛଗଛ ନୟନ୨ ନବାଣ-ଅୟନ୩ ଛାଣିଲେ ସେହି ଦ୍ରୁମନ୍ତ୍ର । ମହାପାପା ଘଡ଼ିଲେ କାଳଦଣ୍ଡ୪ ଉଦ୍ଧେ ।। କାମିନୀଙ୍କ କାନ୍ତ ହେଲା ପ୍ରାପତ । ଅର୍ଥୀ୫ ଅର୍ଥରୁ୬ ନୋହଲା ନବର୍ତ୍ତ । ସେ ଦେଛ କାମଧେନୁପ୍ରାୟ ହେଲା । ଯେ ଯାହା ବାଞ୍ଛା କଲା ତାହା ଦେଲା । ବାଦାପକା ସାର ରଥରୁ ଓହ୍ଲାଇ ସଧୀରେ ଚଲେ ଚଲସ୍ୱ ସେବକ ଦିଗରେ ପୂର୍ଣ୍ଣ ହେଲା ଜୟ ଜୟ । ୧୫ । ଦେଖିଲେ ଦ୍ୱାରେ ପଡ଼ିଛି କବାଟ । ବସିଲେ ମହାପ୍ରଭୁ ଦେବରାଟ । ଅନୁରାଗ ଅନୁରାଗରେମାନ । ସହକେ ସ୍ୱବଚ୍ଛାସ୍ଥି ଭଗବାନ । ବୋଲନ୍ତି ଗୋ ଦାସି କପାଇଁ ପ୍ରବାସୀଠାରେ ଅନାଦର ଏତେ । ଏବେ ଛଣ୍ଡାଅ ଠାକୁରାଣୀଙ୍କ ଅନ୍ତରେ । ୧୬ । ଦାସୀ ବୋଲନ୍ତି ଅମ୍ଭ ପ୍ରଭୁ ଯାଇଁ । ବଲଅଛନ୍ତି ମହାକଷ୍ଟ କାଇ୭ । ଠାକୁ-ରାଣୀଙ୍କ ଶ୍ରୀଅଙ୍ଗ ଅଳସ । ବରହେ ହୋଇଛନ୍ତି ଅତି କୃଶ । ଚନ୍ଦ୍ରା-ଦ୍ୱୟରେ ମନ ସହୁରେ ହମନ୍ତ କାହାର ନୋହଇ ସୁଖ । ଏ ପୁରେ ଅଇଲେ ପ୍ରଭୁ ପାଇବ ଦୁଃଖ । ୧୭ ପ୍ରଭୁ ବୋଲନ୍ତି ଏ କମୁକଣ୍ଠଙ୍କ । ଏଥି ମିଳଇ ଚଉବର୍ଗ ଯାକ । ଗଙ୍ଗା ପଦ୍ମରେ ବଇକୁଣ୍ଠବାସୀ । କମଳା ଯାହାର ପାଟମହିଷୀ । ସେ ଜଗରେ ଅସି ଅଶାରେ ପ୍ରବାସୀ ହୋଇଥ ଯେବେ କଗଣ । ତେବେ କାହାକୁ ବୋଲିବା କର୍ମର ବୋଲ୍ । ୧୮ । ଶୁଣି କମଳା ହସହସ ହୋଇ । ବୋଇଲେ ଦାସୀ ଦ୍ୱାର ଦିଅ ଫେଇ । ଝଟି ଯନ୍ତ୍ର ଫେଡ଼ିଲେ କବାଟ । ହୋଇଲେ ଲକ୍ଷ୍ମୀ ନାରାୟଣ ଭେଟ । ତେତେବେଳେ ଯାହା ହୋଇଲା କେ ତାହା କହିବ ଅବା ବଚନେ । କେ ଉପମା ନ ପାଇବେ ଛିଭୁବନେ । ୧୯ । ଅପଚ୍ଛିକ ଲୋକ ପାଇଲା ପଚ୍ଛ । ଅଙ୍ଗଜଅନ ଲଭିଲାକେ ନେତ୍ର । କଥ ପାଇଲା ଭ ହରଦ୍ରୁ ହସ୍ତ । ଲେଖିଲେ ଏ ଅନନ୍ଦ

---

୧ଅର୍ଜୁନଙ୍କପର ଦୁଇ ହାତରେ ବାଣ ମାରିବାକୁ ସମର୍ଥ । ୨ସେ ମିଳନ ଦେଖିବା ଲୋକଙ୍କ ନେତ୍ର । ୩ମୃତ୍ୟୁପଥ । ୪ଯମଦଣ୍ଡ । ୫ପ୍ରାର୍ଥନାକାରୀ । ୬ପ୍ରାର୍ଥନା କରିବାରୁ । ୭ପ୍ରଧାନ ରଥଯାତ୍ରାକୁ ଲକ୍ଷ୍ୟ । ୮ବ୍ୟାକୁଳ ।

Digitized by srujan ka@gmail.com

ଅବା କେତେ । ଅରୁଣଉଦୟ ଦେଖି ଚକ୍ରଚୟ୧ ଚନ୍ଦ୍ରମା ଗୃହି ଚକୋର । ନେତ୍ର ପ୍ରୀତି ହେଲେ ସେ ନାଗରୀ ନାଗର । ୧୦ । ଏମନ୍ତ ସୁଖସମ୍ପତ୍ତି ବଢ଼ାଇ । ଶ୍ରୀଅଙ୍ଗୁ ସିନ୍ଦୁର ସେଯା୨ କଢ଼ାଇ । ମନ୍ଦା-ସ୍ନାନ ସାରି ସୁବେଶ ହେଲେ । ଅମୃତଯୋଗାଡ଼ ମଣୋହି କଲେ । ଆଚମନ ଶେଷ କରି ଜଗନ୍ନାଥ ବୀଡ଼ିଆ ଲାଗିରେ ବସେ । ଅଣ୍ଟା ଦେଲେ ଗୃହୀ ପ୍ରିୟଙ୍କ ମୁଖାମ୍ବୁଜେ୩ । ୧୧ । ଅଳକୁ ଅମ୍ଭେ କହେ କରିବାର । ନବଦିନ ନବ୍ୟଯୁଗ ପ୍ରକାର । ତୁମ୍ଭ ସ୍ନେହ ଯୌବନବାଳୁ କାମିନୀ । କଦ ଦେଖା ଦେଇ ନାହିଁ ଯାମିନୀ । କର୍ପୂର ଚନ୍ଦନ ଫୁଲ ବେଶମାନ କେହୁ ନୁହେ ସୁଖକରୀ ମନ ତୁମ୍ଭ ପାଶରେ ଥାଏ ନିରନ୍ତର । ୧୨ । ପ୍ରତିଚକ୍ଷୁ ଯେବେ ଅନ୍ତର ଥିଲେ । ଅଧରେ କଣ୍ଠଲ ନ ଦିଶେ ଭଲେ । ସେହି ପ୍ରକାରେ ତୁମ୍ଭ ରୂପ ଦେଖି । ଦେହେଁ ଧଇର୍ଯ୍ୟ ମାତ୍ର ଥିଲୁଁ ରଖି । ଗୀତ, ବାଦ୍ୟ, ନୃତ୍ୟ ହେଲେ ଅପ୍ରମିତ ନ ଦେଖଇ ତହିଁ ଚିତ୍ତ । ବ୍ରହ୍ମଜ୍ଞାନରେ ମହାଯୋଗୀନ୍ଦ୍ର ଯେମନ୍ତ ।୧୩। ଷଡ଼ରସରେ ନାନାଭୋଗମାନ । ସ୍ୱାଦୁ ନୁହଇ ଲାଗେ ଅନ ଅନ । କମଳା କହିଲା ଦିନୁ ଦେଶ । ବୁଦ୍ଧି ବିବେକ ହୋଇଲା ବିନାଶ । ବରଷା କୋକିଳ ପ୍ରାୟ ଡ଼ମ୍ବୁରୁ ମୁଖରୁ ନଇଲା ଭାଷା । ବଚନ କରଣ କେତେ କହିବୁଁ ସେ ଦଶା । ୧୪ । ଏମନ୍ତ କରି କହି ସ୍ନେହ-ବାଣୀ । ସନ୍ତୋଷ କଲେ ଦେବୀ କମଳାଣୀ୪ । ବଲ୍ଲଭ ବଢ଼ାଇଁ ହାର ବଢ଼ାଇଁ । ଦେବତାମାନଙ୍କୁ ମେଲାଣି ଦେଇ । ଦିବ୍ୟ ପଲଙ୍କ ଉପରେ ପହୁଡ଼ିଲେ କମଳା କରନ୍ତି ସେବା । ଏତେକେ ରହିଲା ଦୀନକୃଷ୍ଣ କହିବା । ୧୫ ।

୧ଚକ୍ରବାକ ପକ୍ଷୀମାନେ । ୨ଅଙ୍ଗରେଖା । ୩ମୁଖପଦ୍ମରୁ । ୪ଲକ୍ଷ୍ମୀଙ୍କି ।

Digitized by srujan ka@gmail.com

## ଚତୁର୍ଦ୍ଦଶ ଛାନ୍ଦ ।

### ରାଗ ବଙ୍ଗଳୀ । କଳ୍ପଶାବାଣୀ ।

ଏଥୁ ଅନନ୍ତରେ ନିଶା ହୁଏ ଅବସାନ । ସମସ୍ତ ଦିଗେ ଶୁଭିଲା ତାମ୍ରଚୂଡ଼୧ ସ୍ୱନ । ଉପବନ ବନେ ପକ୍ଷୀ । କଲେ କୋଳାହଳ । ଚକ୍ର୨ ଚକ୍ରବାକୀ ସଙ୍ଗତରେ ହେଲେ ମେଳ । ୧ । ରାଜ୍ୟଭ୍ରଷ୍ଟ ରାଜା ପ୍ରାୟେ ରାଜା୩ ଜ୍ୟୋତିହୀନ । କୁଗ୍ରାମ ଗୁଣୀ ପ୍ରାୟେ ଚକୋର ହେଲେ ଦୀନ୪ । ଅଦୃଷ୍ୟ ତାତକୋ୫ ପ୍ରାୟେ ତାରକା ଅଦୃଶ୍ୟ । ସ୍ୱଭାବସିଦ୍ଧ୬ ଯେନ ଗଲା ଚନ୍ଦ୍ରକାନ୍ତ ହଂସି୭ । ୨ । ରୂପାଜୀବା୮ ମନ୍ଦିରରୁ ବାହାର ଭୁଜଙ୍ଗ୯ । ଗୈର ପ୍ରାୟେ ହୋଇ ଗଲେ ତରଙ୍ଗ ତରଙ୍ଗ । ଉପପତିମାନେ ଯୂଥପ ମାନଙ୍କ ପରାୟେ । ପଳାଇ ପଶିଲେ ଯାଇ ଆପଣା ନିଳୟେ୧୦ । ୩ । ମିଥ୍ୟାବାଦୀ ବଚନକୁ ଲୋଭୀ ପ୍ରାୟେ ହୋଇ । ସଙ୍କେତ ସ୍ଥାନେ କେ ଅଭିସାରିକା୧୧ ନ ଯାଇ । ଅବିବେକୀ କୃପଣ ଦ୍ୱାର ମାର୍ଗଣ୧୨ ପ୍ରାୟେ । କାମାତୁର ହୋଇ ଦୀର୍ଘ ନିଃଶ୍ୱାସ ଛାଡ଼ଏ । ୪ । ବରବେଶ ପ୍ରାୟେ କେଉଁ ଶଠର୧୩ ଅକୃତି । ଉପହାସ କଲା ଦେଖି ଖଣ୍ଡିତା୧୪ ଯୁବତୀ । ହସ ରୋଷ ମିଶାଇ ବୋଇଲା ଅହେ ନାହା୧୫ । କାଲି ରାତ୍ରି କାହାକୁ ହୋଇଲ ତୁମ୍ଭେ ବାହା । ୫ । ଗଣ୍ଡରେ ତାମ୍ବୂଲ ବୋଲ ଅଧରେ କଜ୍ଜ୍ୱଳ । ଏତେ ବିପରୀତ ବେଶ ହେବାର କି ଫଳ । ୬ । କପାଳେ ଅଳତା-ଚିତା ଭଲା ତୁମ୍ଭ କର୍ମ । ଶ୍ରମ ପାଇ ପଚାରି ଅଛିଲ ତାହୁଁ ଶର୍ମ୧୬ । କଉଶିକ୧୭ ପ୍ରାୟେ ବସିଥିଲ କାହା କୁଟେ୧୮ । ଏବେ ଆସିଅଛ ପଶିବାକୁ କାହା

---

୧କୁକ୍କୁଟ । ୨ଚକ୍ରବାକ । ୩ଚନ୍ଦ୍ର । ୪ଦୁଃଖୀ । ୫ଚକ୍ଷୁର ତାରା । ୬ଗତି । ୭ଚନ୍ଦ୍ରଙ୍କର ଜ୍ୟୋତ୍ସ୍ନାରୂପ ହଂସିକୁ । ୮ବେଶ୍ୟା । ୯ଦୁଷ୍ଟପୁରୁଷ । ୧୦ଗୃହନ୍ତରେ । ୧୧ସଙ୍କେତସ୍ଥାନକୁ ଯିବା ନାୟିକାକୁ । ୧୨ମାଗିବା ଲୋକ । ୧୩ଧୂର୍ତ୍ତନାୟକର । ୧୪ସ୍ୱାମିର ପରସ୍ତ୍ରୀ ଗମନ ଚିହ୍ନ ଦର୍ଶନରେ ଈର୍ଷାଯୁକ୍ତନାୟିକା । ୧୫ସ୍ୱାମୀ । ୧୬ସୁଖ । ୧୭ପେଚକ । ୧୮ପୁରରେ ।

Digitized by srujan ka@gmail.com

କୋଟେ୧ । କେଉଁ ରମଣୀ ରମଣ୨ ପାଶରୁ ଉଠିଲେ । କୁମ୍ଭାଳସ୍ୟ
ହୋଇ ଉଠ ବୋଲି ଡାକି ଦେଲା । ୭ । ନିଶାଚରପ୍ରଭୃ୩ ଜାରୁ୪
ପ୍ରୀତି ପ୍ରାପ୍ତେ ଗଲା । ଦ୍ୱିଜ ଘୋଷ ଜିଣି ଦଧିମନ୍ଥନ ଶୁଭିଲା । ରମ-
ଣୀମଣି ରମଣୀଙ୍କ ଗୀତ ପସରେ । କଳରବେ୫ କଳରବ୬ କଲେ
ଅତିଶୟେ । ୮ । ଉତ୍ତମ କାମିନୀଙ୍କ ନିଃଶ୍ୱାସ ପ୍ରାପ୍ତେ ହୋଇ ।
ମନ୍ଦଗନ୍ଧ ସୁଶୀତଳ ପବନ ବହଇ । ନାଗରୀଙ୍କି ନାଗର କଲାକ ପ୍ରାପ୍ତ
ସ୍ତୁତି । କୁମୁଦ ପାଶେ ମଧୁପେ ମଧୁରେ ଗୁଞ୍ଜନ୍ତି । ୯ । କୃଷ୍ଣ କଥା
ଶ୍ରବଣରେ ପାତକ ପସରେ । ଅନାଉଁ ଅନାଉଁ ଅନ୍ଧକାର ଗଲା
କ୍ଷୟେ । ଦୀନବନ୍ଧୁ୭ ପ୍ରାପ୍ତେ ଦିନବନ୍ଧୁ୮ ପ୍ରକାଶିଲେ । ଶ୍ରୀକରରେ୯
ଅରବିନ୍ଦବୃନ୍ଦ୧୦ ବିକାଶିଲେ୧୧ ।୧୦। ଦେବାଳୟମାନଙ୍କରେ ଶୁଭେ
ଶଙ୍ଖଧ୍ୱନି । ସ୍ନାନ କରିବାକୁ ସମ୍ଭ୍ରମରେ୧୨ ଗଲେ ମନ୍ଦ । ଶାରୀ ଶୁକମାନେ
ମନ୍ଦ ଭାବକୁ ତେଜିଲେ । ଶ୍ରୀରାମ ଶ୍ରୀରାଧା କୃଷ୍ଣ ନାମକୁ ରଟିଲେ
।୧୧। ଗୃହବର୍ଣ୍ଣି ବ୍ୟାପିରେ ହୋଇଲେ ପରବେଶ । ଚନ୍ଦ୍ରଧର୧୩
ସୁମର କେ ହୋଇଲେ ହରଷ । କାକମାନେ ଡାକ ଦେଇ ବସାରୁ
ଉଡ଼ିଲେ । ପଥିକେ ଯେ ଯାହା ଦ୍ରବ୍ୟମାନ ସଜାଡ଼ିଲେ ।୧୨।
ଜଗନ୍ନାଥ ଦେବରାଜ ହୋନ୍ତେ ପ୍ରବୁଦ୍ଧ୧୪ । ସେବକେ ଖଟିଲେ ଯାତ
ମାଜଣା ଯୋଗାଡ଼ । ଖଣ୍ଡଣିଆମାନେ ଅଇବୋଇଲେ ଯେଥି ସେବାଟିକ
କହିବ ତାଙ୍କ ଭାଗ୍ୟ ବଚନରେ କିଂବା । ୧୩ । ଦେବଙ୍କୁ ଦୁର୍ଲଭ ଯେଉଁ
ପ୍ରଭୁ ଦରଶନ । ଅଷ୍ଟାଙ୍ଗଯୋଗରେ ଯୋଗୀ ଯାଙ୍କୁ କରେ ଧ୍ୟାନ । ସେ
ପ୍ରଭୁ ସେବା ଦୁର୍ଲଭ ତାଙ୍କୁ ନିଶି ଦିନ । ଏହୁ କେଉଁ କରମ ତାହାଙ୍କୁ
ଅଧୀନ । ୧୪ । ବେଶ ଶେଷେ ଧୂପ ସାରି ଅଇମନ ସାରି । ବୀଡ଼ିଆ

---

୧ଘରେ । ୨ସ୍ୱାମୀ । ୩ଗର୍ହିତଜ ଜନ୍ତୁମାନଙ୍କର ପ୍ରଭବ । ୪ଚଟ-
ପୁରୁଷ । ୫ପିକ ଓ ପାରାଶ୍ରେଣୀମାନେ । ୬ମଧୁର ଧ୍ୱନି । ୭ଦୁଃଖୀ-
ଲୋକର ବନ୍ଧୁ । ୮ସୂର୍ଯ୍ୟ । ୯ଶୁଭ୍ରକିରଣଦ୍ୱାରା । ୧୦ପଦ୍ମ ସମୂହକୁ ।
୧୧ଫୁଟାଇଲେ । ୧୨ତ୍ୱରା ହୋଇ । ୧୩ଚନ୍ଦ୍ରଚୂଡ଼ର ନାମ ।
୧୪ନିଦ୍ରୋତ୍ଥିତ ।

Digitized by srujan ka@gmail.com

ଲାଗିରେ ବଳେ ନୀଳାଦ୍ରିକେଶରୀ[୧] । ଗୀତ ନୃତ୍ୟ ତାନମାନ ଛତିଶ ସଙ୍ଗରେ । ଅନନ୍ଦେ ନୃତ୍ୟ କରନ୍ତି ଗନ୍ଧର୍ବ ଛନ୍ଦରେ । ୧୫ । ଏହିରୂପେ ତିନି ଯାଏ ପାଞ୍ଚ ଅବକାଶ । ଦଶାର ଶୟନ କଲେ ପରମ-ପୁରୁଷ । ଅୟନ[୨] ପାର୍ଶ୍ୱ ପଲଟିଲେ[୩] ବରଷାରେ ଗଲା । ଶରଦ ସମୟ ଆସି ପ୍ରବେଶ ହୋଇଲା । ୧୬ । କୃପଣ ବାଗାଡ଼ମ୍ବର ଲୋକ[୪] ପ୍ରାୟ ହୋଇ । ଘୃଣ କଲେ ମେଘ ଜଳଦାନକୁ ନ ଦେଇ । ବିଷ୍ଣୁ ବକ୍ଷର ହୃଦରେ କଉସ୍ତୁଭ ପ୍ରାୟେ । ନିର୍ମଳ ଗଗନରେ ତାରକା ଶୋଭା ପାଏ । ୧୭ । ତାର[୫] ଘାଟକା ନ କର ସ୍ୱଚ୍ଛ ଦିଶନ୍ତି । ଅମୃତ-ଅଧାରେ[୬] ଯେସନ ଚନ୍ଦ୍ରକାନ୍ତି[୭] ଗତି । ସୁଧା ହ୍ରଦ[୮] ପ୍ରାୟେ ଦିଗ ଦିଶିଲେ ପ୍ରସନ୍ନ । ସୁଖୀ ହୋଇଲେ ଚକୋର ନୃତକ ହୋଇଲେ ଦୀନ[୯] । ୧୮ । ପତିବନୁ ପତ୍ନୀ ଯେସନ ବେଶାଙ୍କୁ କ ଶି । ସେହିରୂପେ ଶିଖୀ[୧୦] ଖିନ୍ନଭିନ୍ନ ହୁଏ ପକ୍ଷୀ । ଚନ୍ଦ୍ରଖଣ୍ଡ[୧୧] ପ୍ରାୟେ ମନିଲୁସୁମ[୧୨] ପ୍ରକାଶ । ଭ୍ରମର ପ୍ରାୟ ଦିଶିଲେ ତଣ୍ଡ୍ରୀ ପ୍ରସନ୍ନ[୧୩] । ଏଥି ସମୀହାସ ପ୍ରାୟେ କାଶ[୧୪] ବିକାଶ ହୋଇଲେ । ମାନସୁ[୧୫] ମାନସହାସ[୧୬] ଅଇଲେ । ଧରଣୀ ପୁଷ୍କରଣୀରେ ହୋଇଲ ଅସି ସଙ୍ଗ । ସଙ୍ଗେ ଯେନି ରମଣୀଙ୍କ କଲେ ନାନାରଙ୍ଗ । ୨୦ । ସମସ୍ତ ଜଳମାନଙ୍କ କଲୁଷ[୧୭] ଛୁଟିଲେ । ସୁମୁଖୀ ଦୃଷ୍ଟି ପରାଏ କମଳ ଫୁଟିଲେ । ପୀତାମ୍ବର[୧୮] ଅଙ୍ଗେ ପୀତ-ଅମ୍ବର[୧୯] ପରାଏ । ହରିତମାନଙ୍କରେ[୨୦] କେଦାର[୨୧] ଶୋଭା ପାଏ । ୨୧ । ରସାଳପତ୍ର ତୋରଣୀ[୨୨] ପ୍ରାୟ ଶୁକପନ୍ତି । ଉଡ଼ିଯିବାରେ ଅକାଶ

---

୧ ନୀଳପର୍ବତନିବାସୀ ଜଗନ୍ନାଥଦେବ । ୨ ବତ୍ସର । ୩ ପାର୍ଶ୍ୱପରିବର୍ତ୍ତନ । ୪ ଅଡ଼ମ୍ବର ଦେଖାଇ କଥା କହିବା କୃପଣଲୋକ । ୫ ଉଜ୍ଜ୍ୱଳ । ୬ ସମୁଦ୍ରରେ । ୭ ପ୍ରତିବିମ୍ବିତ ଚନ୍ଦ୍ରଛବି । ୮ ସ୍ୱଚ୍ଛ ହ୍ରଦସ୍ୱ । ୯ ଦୁଃଖିତ । ୧୦ ମୟୂର । ୧୧ ଶ୍ୱେତଫୁଟାନ୍ଦ୍ରି । ୧୨ ଅଗସ୍ତିଫୁଲ । ୧୩ ତଣ୍ଡ୍ରୀ-ଫୁଲ । ୧୪ କାଇଁଶ । ୧୫ ମାନସରୋବରରୁ । ୧୬ ଗଜହଂସ-ମାନେ । ୧୭ ମଳିଅଭାବ । ୧୮ ବିଷ୍ଣୁ । ୧୯ ପୀତବସ୍ତ୍ର । ୨୦ ସବୁଦିଗରେ । ୨୧ ଶସ୍ୟକ୍ଷେତ୍ର । ୨୨ ଅନ୍ୟପତ୍ରର ମାଳା ।

Digitized by srujan ka@gmail.com

ସୁନ୍ଦର ବିଶନ୍ତି । ଏମନ୍ତେ ଶରଦଋତୁ କାର୍ତ୍ତିକମାସରେ । ଶଯ୍ୟନୁ ଉଠି-
ଲେ ପ୍ରଭୁ ଆପଣା ବାସରେ । ୨୨ । ବାଜିଲା ବହୁଧ ବାଦ୍ୟ ଅଭ୍ୟନ୍ତ
ଧମୃଗ୍ରେ । ମହା ଉତ୍ସବ ହୋଇଲା ସର୍ବ ଲୋକଙ୍କର । ଏମନ୍ତ
ହୋଇ ଶ୍ରୀଜଗନ୍ନାଥଙ୍କ ଚରିତ । ଜଗମୋହନ ନାମରେ ହୋଇଲା
ଏ ଗୀତ । ୨୩ । ସାଧୁଜନମାନେ ଶୁଣ ଏହା ମନ ଦେଇ । ଜଗନ୍ନାଥ
ଚରଣେ ଭକତିମନ୍ତ ହୋଇ । ନ ଜାଣଇ ପାଠ ମୋର ଜ୍ଞାନ କିଛି
ନାହିଁ । ଭାଷାରେ କହିଲି ସ୍ତବଗାଥା୨ ଭାବ ବହି । ୨୪ । ଜଳଧିରୁ
ଜଳବିନ୍ଦୁ ଆଣିଲା ପକ୍ଷୀଏ । ଜଗନ୍ନାଥ ଯାତ୍ରାବିଧି କହିଲି ଥୋକାଏ ।
ଅପ୍ରମିତ ଅନନ୍ତର୩ ନ ଥିଲେହେଁ ଅନ୍ତ୪ । ଆପଣା ବଳରେ ପକ୍ଷୀ
ଉଡ଼ଇ ଯେମନ୍ତ । ୨୫ । ସେହିରୂପେ ଉତ୍ସବ ଅନେକ ରୂପେ ଅନ୍ତ ।
କହିଲି ସାର ଦ୍ୱାଦଶ ଯାତ୍ରାବିଧି ବାନ୍ତ । ସାଧୁଜନମାନଙ୍କ ସଙ୍ଗରେ
ତାହା ଦେଖି । ଚିତ୍ତ କର ହୃଦୟମଧ୍ୟରେ ଥିଲି ରଖି ।୨୬। ଯେତେ-
ବେଳେ ପ୍ରବେଶ ହୋଇଲା ନାନା ଦୁଃଖ । ବାହାର ତା କଲି ପାଇ-
ବାକୁ ମହୀଷୁଖ । ଜଗନ୍ନାଥ ଚରିତ ଅମୂଲ୍ୟରତ୍ନମଣି । ସବୁଠାରୁ
ଭରସା ତା କହଅଛି ଜାଣି ।୨୭। ଦୁସ୍ତର କାଳକାନ୍ତାର୫ ତରିବାର
ପାଇଁ । ଅହର୍ନିଶି ହୃଦ-ସମ୍ପୁଟରେ୬ ଥୋଇ ଥାଇ । ଜଗନ୍ନାଥ ନାମ
ମୋର ପରମମଙ୍ଗଳ । ଜଗନ୍ନାଥ ନାମ ମୋର ସବୁଠାରୁ ବଳ ।୨୮।
ଜଗନ୍ନାଥ ନାମ ଭବଜଳଧିକି୭ ଭେଳା । ଜଗନ୍ନାଥ ନାମ ଦୁଃଖ-
ଅନ୍ଧାରକୁ ନୁଳା । ଜଗନ୍ନାଥ ନାମ ମୋର ଯପ ତପ ଦାନ । ଜଗନ୍ନାଥ
ନାମ ସବୁ ବାର ବ୍ରତମାନ । ୨୯ । ଜଗନ୍ନାଥ ନାମ ମୋର ସର୍ବ ଧର୍ମ
କର୍ମ । ଜଗନ୍ନାଥ ନାମ ମୋର ନାଶେ ଭବଭ୍ରମ । ଜଗନ୍ନାଥ ନାମ
ମୋର ଅଭୟପଞ୍ଜର୯ । ଜଗନ୍ନାଥ ନାମ ମୋର ସବୁ ସୁଖଘର ।୩୦।
ଜଗନ୍ନାଥ ନାମ ଗୁଣବର୍ଣ୍ଣି ରଖ ହୃଦେ । ଜଗନ୍ନାଥ ନାମ ଗୋଟି

---

୧ଆଡ଼ମ୍ବର । ୨ଜଗନ୍ନାଥଦେବ । ୩ଅପରସୀମ ଆକାଶର । ୪ସୀମା, ପାର । ୫ଗହନ, ବନ । ୬ତନ୍ତୁପଙ୍କୁଅରେ । ୭ସଂସାର-ସାଗରକୁ । ୮ସନ୍ତାରମାସ୍ତା । ୯ଭୟଶୂନ୍ୟ ଅଭୟସ୍ଥାନ ।

Digitized by srujan ka@gmail.com

ଘୋଷ ଗଦଗଦେ । ଜଗନ୍ନାଥ ନାମ ମନ୍ତ୍ରପାଠ ସୁନାଶିର । ବୋଲେ ଦ୍ୱିଜକୃଷ୍ଣ ଜଗନ୍ନାଥ ମୋ ଠାକୁର । ୩୧ ।




Digitized by srujan ka@gmail.com

# ବିଜ୍ଞାପନ ।

କଟକ ରାୟ ପୁସ୍ତକାଳୟରୁ ନିମ୍ନଲିଖିତ ପୁସ୍ତକମାନ କ୍ରୟ କଲେ ବେଶି କମିଶନ ପାଇବେ ।

| | | | |
|---|---|---|---|
| ଚାର୍ଯ୍ୟଚାଭକ୍ତି (୫୫ ଅଧ୍ୟାୟ) | ଟ ୧୵ | ଲକୋଦସ୍ କୋଇଲ | ଟ ୦ ୵୨ |
| ଏକାଦଶୀବ୍ରତ (ଶ୍ଳୋକସହ) | ଟ ୦ ।୵ | ମୃଗୁଣୀସ୍ତୁତି | ଟ ୦ ୵୨ |
| ମଥୁରାମଙ୍ଗଳ | ଟ ୦ ।୵ | ଗଜନିସ୍ତାରଣ (ପଦ୍ମନ) | ଟ ୦ ୵୨ |
| କୋଇଲିମାଳିକା | ଟ ୦ ୵୯ | ହନୁମାନ ବନ୍ଦନା | ଟ ୦ ୵୨ |
| ସବକାଢ଼ା | ଟ ୦ /୬ | ଚୋରାଚୋରି | ଟ ୦ ୵୨ |
| ତୁଳସୀବତଦୀ | ଟ ୦ /୭ | ରୂପସି ଚଉତିଶା | ଟ ୦ ୵୨ |
| ଅର୍ଜ୍ଜୁନ ଚଉତିଶା (ଟୀକା) | ଟ ୦ ୵୯ | ଜନ୍ମାଷ୍ଟମୀ | ଟ ୦ ୵୨ |
| ଅର୍ଦ୍ଧସଂସ୍କୃତ | ଟ ୦ ୵୯ | ଦଶଅବତାର | ଟ ୦ ୵୩ |
| କମଳାକାନ୍ତ ଚଉତିଶା ଟୀକା | ଟ ୦ ୵୯ | କବଜେଠ | ଟ ୦ ୵୨ |
| କଶୋରଚନ୍ଦ୍ରାନନ୍ଦ ଚମ୍ପୂ | ଟ ୦ /୭ | ଗୋପାଳ ସହସ୍ର ନାମ | ଟ ୦ ୵୯ |
| ବୈଦେହୀଶବିଳାସ | ଟ ୦ / | ସଚିତ୍ର ଲାବଣ୍ୟବତୀ ସୁଆଙ୍ଗ | ଟ ୦ ୵ |
| ଚାଣକ୍ୟଶ୍ଳୋକ (ବୃହତ୍) | ଟ ୦ ୵ | ଦୁଷ୍ମନ୍ତଅବଦାଣ | ଟ ୦ ୵୨ |
| କେଦାରଗୌରୀ | ଟ ୵୨ | | |

ଶ୍ରୀ ଶଶିଭୂଷଣ ରାୟ, ପ୍ରୋପ୍ରାଇଟର

ରାୟ ବୁକ୍‌ଷ୍ଟଲ— କଟକ ।

Digitized by srujan ka@gmail.com